# ସୂଚୀ

---

## ମହାଦୀପ

ଯଜ୍ଞବନ ! ଯଜ୍ଞବନ ! ଭଣୁ ଛନ୍ଦେ
ଢାଳି ଦିଅ ଗୀତ
ଜୀବନ ମନ୍ଦିର ଚୂଳେ ଜଳି ଉଠୁ
ମୋର ମହାଦୀପ
ଜଳି ଉଠୁ ଗଗନର ଅଗଣିତ
ଜ୍ୟୋତି ରଶ୍ମି ଛନ୍ଦେ
ଅସୀମ ଆଶାର ରୂପେ ଶିଖା ତାର
ଖେଳୁ ଏ ବକ୍ଷରେ ।

## ମହାଦୀପ

ଜଳି ଉଠୁ ଜଳେ ସ୍ଥଳେ ଉଜ୍ଜ୍ୱଳାଇ
ସକଳ ମେଦିନୀ
ଶାନ୍ତ ତାର ରଶ୍ମି ସଙ୍ଗେ ହସି ଉଠୁ
ତିମିର ଯାମିନୀ

ବେଦନାର ଅମାବସ୍ୟା ଆସେ ଘୋଟି
ନିବିଡ଼ୁଁ ନିବିଡ଼
ଗରଜେ ଭୀଷଣ ନିଶା
ମରଣର କ୍ରୂହାଃ ଗମ୍ଭୀର !
ଡାକ ଉଠେ ଶମଶାନେ
ପିଶାଚ ଶକୁନ କରି ରଡ଼ି
ମହାତମସାର କୋଳେ
ମୋର ମହାଦୀପ ଉଠେ ଜଳି !
ଜୀବନ-ମନ୍ଦିର ମମ
ଅସୀମ ଆକାଶେ ଟେକ ଶିର
ବିଜୟ ନିଶାଣ ସମ
ସୁମହାନ ଉର୍ଦ୍ଧେ ଉଭା ଚିର ।
ମୂର୍ଚ୍ଛଣା ପରେ ତାର
ଭଗ୍ନ ହୋଇ ଯାଏ ଉଠେ ଡାକ
ଖେଳିଯାଏ ସେ ଶବଦ
ଦଶ ଦିଗପାଳେ କରି ସାକ୍ଷୀ ।
ଧରଣୀର ଛନ୍ତୀ ଥରେ
ତୃଣ ସମ ଦୋହଲେ ଅଚଳ !

ସେ ଶବଦେ ଉଠେ କମ୍ପି
ସକଳ ବିଶ୍ୱର ବକ୍ଷସ୍ଥଳ ।

କହେ ଡାକି ସେ ଶବଦ "ଶୁଣ ଶୁଣ
ହେ ଜଗତବାସି !
"ଜୀବନ ବିଜୟ ଦୀପ
ଅସୀମ ଆକାଶେ ଜଳେ ଝଳି ।
"ଧରାର ଉର୍ମିର ଉଚେ
ଚଳୁ ଜୀବନର ମହାରଥ
"ଉଠ ବୀର ! ଏ ଆଲୋକ
ରଚି ଦେଉ ତୋର ସ୍ୱର୍ଗପଥ ।
"ଅଖିଳ ଜୀବର ବଂଶ
ହେଉ ଧନ୍ୟ ହେଉ ସମୁଜ୍ଜ୍ୱଳ
"ସତ୍ୟ ହେଉ ପୂର୍ଣ୍ଣ ହେଉ
ମହାପ୍ରସ୍ଥାନ ହେଉ ଚରାଚର !
"ଭସ୍ମ ହେଉ ଜରା ମୃତ୍ୟୁ
ଅବସାଦ ତନ୍ଦ୍ରା ଗ୍ଲାନି ଭୟ
"ଜାଗ ବୀର ! ଦେଖ ଚାହିଁ
ଜଳେ ଦୀପ ଅମର ଅକ୍ଷୟ ।
"ନାହିଁ ନାହିଁ ହତାଶାର
ତପତ ବତାସ ଲାଗି ତହିଁ
"ଦୀନତାର ଅଶ୍ରୁବେଗେ
ଅବିରାମ ପଡ଼ୁଅଛି ବହି !

"ଶ୍ରାବଣର ମେଘରେ ଅମା
ଢାଙ୍କି ଅନ୍ଧ କଲେ ମହାଦୀପ
"ଜୀବନ-ତଇଲ ଢାଳି
ରଖ ତାକୁ ସଜାଗ ଜୀବନ୍ତ !
"ଜଳି ଉଠୁ ଦୀପ୍ତି ତାର ଢାଳି ଦେଇ
ଦୂରେ ବହୁ ଦୂରେ
"ପ୍ରତି ପ୍ରତିବିମ୍ବ ତାର ଫୁଟୁ ବର୍ଣ୍ଣ-
ମାନସ-ମୁକୁରେ
"ଆସ ବୀର ! ଧର ତୋଳି
ଆଶାର ଉଜ୍ଜ୍ୱଳ ମହାଦୀପ
"ଜୀବନ-ସାବଳେ ତବ
ସାଙ୍କ ଦଅ ସ୍ୱପନ-ସ୍ଫଟିକ !
"ହାତେ ତବ ନାହିଁ ବନ୍ଧୁ !
ପାରିବାକୁ ବୁଝି ଏଥି ତଳେ
"କିଏ ସ୍ୱପ୍ନ, ଜାଗରଣ
ସତ୍ୟ ମିଥ୍ୟା ଏ ଧରଣୀ-ମାଝେ
"କିଏ ପଥ କିଏ ଘୋର
ବିପଥ ନାହିଁଟି ଏଥି ଜଣା
"ତୁଚ୍ଛ ନାହିଁ ଜୀବନରେ
ଭବ କିଏ ନୋହେ ବାନ୍ଧବ । ?
"ଆଶାର ଆଲୋକେ ତେଣୁ
ଜୀବନର ମହାଦୀପ ଜାଳ

"ସହଜ ସମ୍ମୁଖ ପଥେ
ପଦ ଦୁଇ ନଅ ବେଗେ ଚାଲ ।
"ଧାପର ଭଇଲ ଦେଖ
ଷଣେ ଷଣେ ଯାଉଅଛି ସବୁ
"ଲଗଇ କି ବୃକ୍ଷେ ଅଜ
ଥରେ ଦେଇଁ ପନ ସତ୍ତେ 'ଶ୍ୱର ?
"ଶୁଙ୍ଗି ବନ୍ଧ ନଦୀ ଯେବେ
ଭୀମ ବେଗେ ପ୍ଲାବଇ ଧରଣୀ
"ଆସଇ କି ଫେର ତାହା
ଶୋକ ନଇ ସାଗର ସରଣୀ ?
"ବର୍ଷସାଗବାର ଢଳ
ଲୁଣଅଛି ଅସଂଖ୍ୟ ରତନ
"ଛୁଞ୍ଚାର ଅଣିକା ଆଗେ
ବେଲ ଥାଉଁ ତୁଅ ନମଗନ ।
"ଜାଗ ! ଜାଗ ! ଜୀବନର
ସହଜ ସରଲ ପଥ ଲୋଡ଼ି
"ଜଟିଲ ଦୁଷ୍ଟିନ୍ତା ଗ୍ରନ୍ଥ ରତ୍ନ ଢବ
ପଛେ ଆଖ ପଡ଼ି ।
"ଉଠ ଦ୍ୱିପି ପଥ ଯେବେ
ସୁଖର ସରଣମଣି ଲଭେ
"ପ୍ରାଣେଶ୍ୱର ହାସ୍ୟ ବନ୍ଧୁ
ଅଛି ତୁ ଦୁର୍ମୂଲ୍ୟ ସେ ଦେ ଲଭେ !

"ବେଦନାର ଅଶ୍ରୁକଣା
ଝରେ ଯେବେ ନୟନରୁ ଢୋଣି"
"ହୃଦୟ ଶୀତଳ କର
ଧରା ଧୂଳି ଝାଡ଼ି ଦେଇ ମନୁ"।
"ନିର୍ମଳ ସେ ପୂତ ଜଳେ
ଅନ୍ତର ବେଦନା ତୋର ଲୟ
"ଜୀବନ-ମନ୍ଦିର ଚୂଳେ
ଜଳ ଉଠୁ ଆଶା-ମହାଦୀପ !
"ଅଖିଳ ଜୀବର ବଂଶ
ହେଉ ଧନ୍ୟ ହେଉ ସମୁଜ୍ଜ୍ୱଳ
"ସତ୍ୟ ହେଉ ପୂଣ୍ୟ ହେଉ . . .
ମହୀୟାନ ହେଉ ଗଉରବ !"



## ଏ ଦେହକୁ ଭଲପାଏ ମୁହିଁ

ଯୂପି ହୁଏ ଦେଖି ଏ ଜଗତ
ଅକାଶ ସାଗର ଗିରି ଭୂଇଁ
ସକଳର କେନ୍ଦ୍ରରୂପେ ଜନ୍ମ,
ଏ ଦେହକୁ ଭଲପାଏ ମୁହିଁ ।

ଏ ଦେହକୁ ଭଲ ପାଏ ମୁହିଁ,
ଭଲ ଢାର ପ୍ରତି ଅବୟବ
ସବୁ ମାୟା ଅନ୍ତର ଭିତରେ
ସତ୍ୟ ସେ ଯେ କେବଳ ସମ୍ଭବ ।

ଧନ ମାନ ଯଶ ଦେହେଁ କେତେ
ସବୁ ମୂଳେ ପ୍ରଥମ ଜୀବନ
ନର ନାରୀ ରୂପ ଲେଖେଁ ଯେତେ
ତା ତହୁଁ ସେ ଅଧମ ଜୀବନ ।

## ମହାସତ୍ୟ

ନଦୀ ବନ ଆକାଶର ଶୋଭା
ମାନବର ଗଢ଼ା କାରୁକର୍ମ
କର୍ମର ଲାଳସା ଲାଗି ସବୁ
ଏହୁ ଚର୍ମ ଏହୁ ସ୍ନାୟୁ ଚର୍ମ !

ଏ ଦେହକୁ ବେଢ଼ି ନାହିଁ ଶାଳ
ବେଢ଼ିଛି ସେ ଚଉଦ ଭୁବନ
ଫୁଲ ଯହିଁ ସବୁ ଅନୁଭୂତ
ଚୁମ୍ବନ ପରଶ ଆଲିଙ୍ଗନ !

ଏ ଦେହକୁ ରଖିବାକୁ ଧରି
ଲୋଡ଼ା ଯାହା ସେ ମୋର ଧରମ
ତାହା ବିନେ ଅଛି କେଉଁ ଆତ୍ମା
ଅଛି କେଉଁ ଦେବତା ପରମ ?

ଦେହ ପାଇଁ କରୁଁ ଆମେ ଯାଗ
ହୃଦୟର ଦୁର୍ଦ୍ଦମ ଆବେଗେ
ନିଜ ପାଇଁ କରୁଁ ଯଥା ତ୍ୟାଗ
ଅପରର ନାମ ଦେଇ ଲୋଭେ !

ହେ ଶିଳ୍ପୀ ହେ କବି ଧାର୍ମିକ
ଦେଖ ପରି ସବୁ ସୁଖ ବ୍ୟଥା
ଦେହ ଗଣ୍ଡି କି ଅଛି ଜଗତେ
ସତ କହ, ରଖି ବାକେ କଥା !

## ମହାପଥ

ବହୁ ବହୁ ଆଘାତ ସହଣ
ସହିଅଛ ଯେତେ ଯନ୍ତ୍ର ତୁମେ
ମାଟିର ଏ ଦେହ ଖନେ ଭିଲ୍ଲ
ମିଳେ ତାହା କେଉଁ ସ୍ୱର୍ଗଭୂମେ !

ପୁଲକ ବେଣୀ ଅଧ ଯେତେ
ସୃଷ୍ଟି କଲା ଶିଳ୍ପ ସାହିତ୍ୟର
ନୁହଇ କି ଏ ଦେହର ଗୁଣ
ଧର୍ମ, କର୍ମ, ଅଦେହ ଚିଜ୍ଞ ନର !

ପୂଜା ପର୍ବ ଉତ୍ସବ ବର୍ଷର
ବାଛ ସବୁ ଯେତେ ଗଣି ଗଣି
ଅଗ୍ନିର ନିୟମ ନୀତି ଯେତେ
ତାହା ପାଇଁ କହ ସନାତନ ?

ଅତୀତର ଧର୍ମ ଅଭିଯାନ
ମନ୍ଦିରେ ଯା ଅଙ୍କେ ପରକାଶ
ମାନବ-ଦେହର କୀର୍ତ୍ତିଗାଥା
ନୁହେଁ କି ସେ ଦେହ-ଇତିହାସ ?

ଏ ଦେହର ପୂଜା ପାଇଁ ଦେଖ
ଦୁନିଆର ନବ ନବ ରୂପ
ଆକାଶ ସାଗର କୋଳେ କେତେ
ବିଜ୍ଞାନର ଜଳେ ଦୀପ ଧୂପ !

ଭାଲୁ ଘଡ଼ ବ ବଦେ ଭୁବନେ
ବହୁବ ବ ସେହୁ ଦେହ ଛୁଇଁ
ନାହିଁ ନାହିଁ ନ ପାରବ, ତେଣୁ
ଏ ଦେହକୁ ଭଲ ଭଲ ପାଏ ମୁହିଁ !



## ଦୁଇଟି କଳା ଆଖି

ନ ପଡ଼େ ମନେ ଆଜ ଦେହର ଶୋଷ
ନାସାର ନିଃଶ୍ୱାସ ଅଧର-ଜବା
କଟିର ବୃନ୍ତ ଗତ ଲୁବ୍ଧର ଘସ୍ରା
ତପଃସ୍ୱିନ କଥା ବେଣୀର ମାସ୍ରା
ତରଳ ସୁକୋମଳ ପରଶ
ଜୀବନ ତଳେ ଯେବେ ସରସ
ସେ ଦିନ କଥା ଆଜି ସାସୋର ବାନ୍ଧି ଦେଲ
ସକଳ ତାଳ ଯେବେ କାଟିଲ କର ଦେଲା !
ନିଭିଛି ସବୁ ମନୁଁ ବହ୍ନିର ଯାହା ଲଖି
ଦୁଇଟି ଅଖି ଖାଲି ଦୁଇଟି କଳା ଅଖି !

ନ ଥାଏ ଫିକି ସ୍ମିତା ଅଧର ବେଳ .
କହିବା ପାଇଁ କଥା ମନକୁ ଘେନ ।
କହିବା ପାଇଁ ମୋର ବାସନା ଦୁଖ
ଦହିଲା ଦେହ ପିନା ମଣିଲି ସୁଖ
ସୁଖରେ ମିଶି କେତେ ବେଦନା
ମଧୁରତର କଲା ସାଧନା !
ସତ୍ୟ ଥିଲା ଯେତେ ଜୀବନ ଅନୁଭୂତ
ନାହିଁଛି ଲେଶ ତାର ବହୁଛି ଯାହା ସ୍ମୃତି
ନାହିଁଛି ରୂପ ଆଜ ବହୁଛି ରସ ବାକି
ଦୁଇଟି ଆଖି ଖାଲି ଦୁଇଟି କଳା ଆଖି !

ଯେ ଥିଲା ଅତି ସତ ନିକୃଷ୍ଟତମ
କେମନ ତାକୁ ଆଜି କହିବ ଭ୍ରମ
ଜୀବନ ହୋଇ ଦିନେ ଥିଲାଟି ଯାହା ।
କେମନ ବୋଲିବ ସେ ମରଣ-ମାୟା
ଦିନେ ଯେ ପୁଲକର ରୁଧିର
କଲା ଏ ଦେହମୟ ଅଧୀର,
ଲୁଚିଅଛି ତାହା ବୟସ ଆବରଣ
ନୁହଇ ମିଛ ତେବେ ନୁହେ ସେ ଅକାରଣ
ସେ ଲାଗି ସ୍ମୃତି ଭାର ବହିଛି ଆଜି ଯାକେ
ଦୁଇଟି ଆଖି ଖାଲି ଦୁଇଟି କଳା ଆଖି !

## ମନ୍ଦାକ୍ଷ

ମୋ ଆଖି ଲାଲିମାର ଉପମା ନାହିଁ
ପ୍ରଳୟ ବ୍ୟଥା ସମ ରହେ ସେ ଗୁନ୍ଥି
　　ଲନୁଭ ଉନ୍ମେଷେ ସକଳ ନାଶି
　　ଅସୀମ ଉମସାରେ ଝଟଇ ଖସି
ଜୀବନେ ଯେତେ ମୋର ଲାଲିମା
ସହଜେ ଡେଇଁ ଯାଏ ତା' ସୀମା
　　ସେ ଲାଗେ ବେଦନାରୁ ବଳି ସେ ପ୍ରିୟ ଅତି
　　ଅସୀମ ଉମସାରେ ଆସଇ ମୋର ଲତି
ନବବଧୂର ଲାଜ ମରମେ ଯାଏ ଡାକି
ଦୁଇଟି ଆଖି ସେ ତ ଦୁଇଟି ଲାଲ ଆଖି !
　　ଜୀବନ ଲାଲିମା ସେ ଦେହର ଲାଜ
　　ଅନୀତ ପାପ ମମ ସୀରନ୍ତ ଦାୟ
ତା ପାଇଁ ଲଜ୍ଜ ଭୟ ତା ପାଇଁ ଘୃଣା ?
ଦେଉଛୁ ଦାନ ସେ ତ ନ କରୁ ଗଣା ।
　　ଦେଉଛୁ ସୁଖ ରାଶି ସଜାଡ଼ି
　　ଦୁଖର ଲକ୍ଷ ତେତେ ଅଜାଡ଼ି
ବ୍ୟଥାର ଉଚ୍ଛ୍ୱାସେ ସେ ଗଭୀର ଆଶା ମମ
ଶ୍ରାବଣ ଘନ ନଭେ ପୂର୍ଣ୍ଣ ଶଶି ସମ
　　ଶ୍ରାବଣ ପୂର୍ଣ୍ଣିମାରେ ବଢ଼ାଇ ଦେଇ ସଖି
　　ଦୁଇଟି ଆଖି ଖାଲି ଦୁଇଟି ଲାଲ ଆଖି ।

ଅଛୁ ସେ କେଉଁ ଦେଶେ ନୁହଇ ଜାଣି
ବରଷ ମାୟାମୟ ରୂପର ଠାଣି

ଦଗ୍ଧ ମାନସରେ ବଢାଇ ତୃଷ୍ଣା
ଏ ସୁଖ ଢାଳିଦିଏ ନୂତନ ବୃଷ୍ଟି
ଯାହ ଫୁଟ ମୋର ଜହ୍ନରେ
ଯାହ ଜଳଉଠେ ଅକୂଳେ
ଭଣେ ବଢେ ତୃଷା ଫିର ମୋ ଯାଏ ଚାଲି
ଢଳଢ ନୂଢେ ଆଶା ରଥାଏ ଓଢଣି ଲାଜ
ଶୁଷ୍କ ଏ ରସନା ସୁଖର ରସ ଗୁଣ୍ଠି
ଦୁଇଟି ଆଖି ତାହା ଦୁଇଟି କଳା ଆଖି !

ସେ ପଛେ ହେଉ ମୋର ଛଳନା ଛାୟା
କେବଳ ନୟନର ମୋହନ ମାୟା
କେବଳ ଧମନୀର ଚପଳ ଗତି
ଯୁକ୍ତିହୀନ ଏକ ଭ୍ରମର ଯତି
ସେ ପଛେ ହେଉ ମୋର ସ୍ୱପନ
ଅନ୍ତର୍ହି ଆପଣାର ଆପଣ
ସେ ଯଉବନ-ସୁଖ ଝଙ୍କୁ ଏ ଦେହ ମନେ
ତାହାର ରଙ୍ଗିମା ଜଳୁ ଏ ଆଖି କୋଣେ
ଜୀବନ ସୁଖ ଢାଳୁ ପୀରତି-ରୂପା ଝାରୀ
ଦୁଇଟି ଆଖି ଖାଲି ଦୁଇଟି କଳା ଆଖି ।



# ବନ୍ଦୀର ବିଳାପ

ଝେଁଝିଦଅ ଝେଁଝିଦଅ ଏ ଡାଗ୍ରଦୁଆର,,
ଘୋଟିଅଛି ବିଲବିଲ ଘନ ଅନ୍ଧକାର,
ଏ ଆଲୋକ ଏ ଆକାଶ
ପରଶେ ଦିଏ ପରଶ,
ସୁଦୂର ସ୍ମୃତିର ଆଣେ କରୁଣ ଝଙ୍କାର,
ଲଗାଏ ମରମେ ମମ ମହା ହାହାକାର ।

ସବୁ ଅରଗଳ ଆଜି କରିଦିଅ ବନ୍ଦ,
ଏକାକୀ ଏ କକ୍ଷେ ମୁହିଁ ରହିଥିବି ଅନ୍ଧ
ଏହି ଘୋର ଅନ୍ଧକାରେ
ଏଗାଳେଁ ଲୋତକ ଧାରେ
ସବୁ ମୋର ସକରୁଣ ଆଶା ନିରାନନ୍ଦ
ଲିଭାଇବ ହୃଦୟରେ ବେଦନାର ଛନ୍ଦ ।

ସବୁ ସ୍ମୃତି ସବୁ ସୁଖ ଭାବନାର ତେଜ
ଦିନେ ଏ ଅନ୍ତର ଦେଶେ ବାନ୍ଧିଥିଲି ଯେତୁଂ
ବନ୍ଧ ଏ ଦୁଆରେ ଅଜ
ଫେରିଯାଉ ବାନ୍ଧି ବାନ୍ଧି,
ଏ ଭବିସ୍ତ କୋଣୁଁ ମୋର ସମ୍ବାଦ ନ ଦେଉ
ସେ ଦିନ ଅନ୍ତର ଦେଶେ ବାନ୍ଧିଥିଲି ଯେତୁ ।

ଛାଡ଼ି ଈଶ୍ୱର ସକଳ ନିଗଡ଼ ବନ୍ଧନ
ଗଢ଼ ଆଶା ପୀରତିର ମଧୁ ନିବନ୍ଧନ
ସଚଳ ସ୍ନେହ ମମତା
ମରମ ନିଭୃତ କଥା,
କରିବି ଏ କୋଣେ ତାର ସମାଧି ସାଧନ,
ସକଳ ମଧୁର ସ୍ମୃତି ପ୍ରୀତି ଆରାଧନ ।

ମୋର ପ୍ରେୟସୀର ସେହି ବଦାନ୍ୟ ସୁହାଣୀ,
କୋମଳ ମିନତିଭରା ସେ ମଧୁର ବାଣୀ
ଅଭିମାନେ ଛଳ ଛଳ
ନୟନୁଁ ଝରନ୍ତ ଜଳ
ଭୁଲାଇଲି ସେ ଦିନ ଯେ ମୋ ହୃଦୟରାଣୀ,
ଭୁଲିପାଏଁ ଏଥି ସବୁ ଅତୀତ କାହାଣୀ ।

ଯେ ଦେଶେ ଭ୍ରମଇ ମୂର୍ତ୍ତି ଯେତେ ପରସଙ୍ଗେ
ସ୍ମୃତି ତା'ର ଛାୟା ସମ ଚଳଇ ମୋ ସଙ୍ଗେ

ସେ ଆଁଖି ନିରେଖେ ମୋରେ
ନିଶିଦିନ ସଞ୍ଜ ଭୋରେ,
ସେ ବାହୁବନ୍ଧନ ମୋର ବେଢ଼ିଅଛି ଅଙ୍ଗେ
ସ୍ମୃତି ତାର ଛାୟା ସମ ଚଳଇ ମୋ ସଙ୍ଗେ ।

ଅଳସ ଦିନକୁ ଯେଣୁ ଅର୍ପିଥିଲ ବନ୍ଧୁ
ବସିଥିବ ମୋ ବାଟର ଅପେକ୍ଷାରେ ରହୁ
ନୁଆଁଇଁ ମୁଖ ମଳିନ
ଗଣୁଥିବ ନିଶି ଦିନ
କି ବାରତା ଏ ପବନ ବହିନେବ ଛନ୍ଦି
ଜୀବନ ଦୋସର ଶିର ମୋର ପ୍ରାଣସଙ୍ଗୀ ।

ଶିଶୁ କାଳକଣ୍ଠେ ଭରି ମୋ ଦୀନ କୁଟୀର
ମୋ ବିଚ୍ଛେଦେ ଭଙ୍ଗିଥିବ ବିଷାଦ ଗଭୀର,
ଦୟା ସ୍ନେହର ଆକର
ଦୁଃଖିନୀ ଜନନୀ ମୋର
ମୋ ଲାଗି କି ହେଉଥିବ କାତର ଅଧୀର,
ତୋଷିବ ତାହାକୁ ଏହୁ ଶୀତଳ ସମୀର !

ସେ ବାରତା ନ ଆସୁ ଏ ବିଜନ ପ୍ରବାସେ,
ସେ ସ୍ମୃତି ନ ଭାସୁ ଅଜି ଆଲୋକ ଆକାଶେ,
ଆଣିଛି ଯେ ସ୍ମୃତି ଧରି
ଯାଉ ସବୁ ଏଥି ମରି

## ମହାଦାସ

ନିଭୃତ ଏ ଶୂନ୍ୟ କୋଣେ ତମସ ତରାସେ
ଆଲୋକର ରଶ୍ମି ଉଠୁ ପୁଣି ନବ ହାସେ

ମୁକତ ବନ୍ଧନ ଦୁଃଖ ସୁଖ ଯେତେ ହାୟ
ଆସେ ଯାଏ ନିତ ସେ ଯେ ଦବା ଗ୍ନି ପ୍ରାୟ
ସମୟର ସ୍ରୋତ ସମ
ଜୀବନର ଶିଖା ମମ
ସବୁରି ଉପରେ କାଲି ଉଦ୍ଭବ ଅନ୍ୟାୟ
ଆରମ୍ଭିବ ଜୀବନର ନବୀନ ଅଧ୍ୟାୟ ।



## ଶିଶିର-ହାସ୍ୟ

ମାଳଞ୍ଚର ଅଙ୍ଗ ଓଦା
ଅଶ୍ରୁର ସିଞ୍ଚିରେ
ଆଜି ପ୍ରିୟ ଏ ହୃଦର ନାଚିରେ !

ଅଜାଡ଼ ମୋ ଯଉବନ
ଆଣିଅଛୁ ନିମନ୍ତ୍ରଣ
ଭେଳକୀ ସୁବାସେ ଦଣ୍ଡ ଦଣ୍ଡିରେ
ଆଜି ପ୍ରିୟ ଏ ହୃଦର ନାଚିରେ !

ସୁଦୂରର ପ୍ରିୟା ମୋର
ଭାବେ ସବୁ ଭୁଲାଇ
ଅନ୍ତର ଜଳ ଭାର ବୁଝାଇ !

ମହାଦୀପ

ନୟନେ ଶିଶିର କଣା
ଝଲଉଦଏ ପଥବଣା
ବସିଛୁ ସୁହୁରେ ମଥା ନୁଆଁଇ
ଅନ୍ତର ଜଳ ଢାଳ ବୁହାଇ !

ନୟନ-ଶିଶିର ଢାର
ଲାଗେ ଓଜନ ଭୁବନେ
ଲାଗିଅଛୁ ରକ୍ତ ମୋ ଜୀବନେ !

ଲାଗିଅଛୁ ଫୁଲେ ଫୁଲେ
ଆକାଶ ଧରଣୀ ଛୁଲେ
ତରୁ-ଲତା-ଗିରି-ନୀଳ ବସନେ
ଲାଗିଅଛୁ ରକ୍ତ ମୋ ଜୀବନେ !

ପରଶିଛୁ ପଥେ ପଥେ
ହରଷାଇ ଘାସରେ
ପସ୍ୱରୀର ପରଥମ ହାସରେ !

ତାରକାଖଚିତ ନଭେ
ତାହାରି ପରଶ ଦ୍ରବେ
ପଞ୍ଚମୀ ଜୋଛନାର ହାସରେ
ପରଶିଛୁ ହରଷାଇ ଘାସରେ !

ସିକ୍ତ ଅଧର ମମ
ସିକ୍ତ ମୋ ଲପନ
ସିକ୍ତ ଏ ଦେହ ମନ ଜୀବନ !

ଅନ୍ତରେ ଅନ୍ତରେ
ସେ ପରଶ ସଞ୍ଚରେ
ପ୍ରଭିଜଠେ ଜାଗରଣ ସପନ
ସିକ୍ତ ଏ ଦେହ ମନ ଜୀବନ !

କମନୀୟ କମଳର
ସୁକୋମଳ ବୃନ୍ତରେ
ଝଡ଼ିପଡ଼େ ନୀଳଜଳ-ମୁକ୍ତରେ !

କାଶ ଫୁଲେ ହସିହାସି
ଝରିଲ ଶେଫାଳିରାଣି
ଦୂର ବନ-ସୁରଭିଣ-ଶକ୍ତୁରେ
ଢଳିପଡ଼େ ନୀଳଜଳ-ମୁକ୍ତରେ ।
ପ୍ରତି ଲୋମକୂପ ଅଙ୍ଗ
ଥରି ଉଠେ ପୁଲକେ
ଏ ପରଶ ଦେଦେ ମୋର ଦେଲ କେ ?

ଦାଦୁରର ଅଗମନା
ରଜନୀରେ ଦେଲ ଭଣି

## ମହାଦୀପ

ସୁଶୀତଳ ଜୋଛନାର ଝଲକେ
ଏ ସରଣ ଦେହେ ମୋର୍ ଦେଲ କେ ?

**ଆକାଶର ଶଶି ତାରା**
ହସି ଉଠେ ସହସା
ଫୁଲେ ଫୁଲେ ହାସ୍ୟର ବରଷା

ଧବଳିତ ଧରା ତଳେ
ହାସର ଜୁଆର ଚଳେ
ସଜଳ ସରଣ ଲଭେ ସରସା
ଫୁଲେ ଫୁଲେ ହାସ୍ୟର ବରଷା ।

ଋସ ମୋ ହାସ ଛଆ
ଅଶ୍ରୁରେ ସଜଳ
ମନର କାଳିମା ଭରୁ ଉଜ୍ଜଳ

ସବୁ ହାସ ପରେ ମୋର
କରୁଣାର ଝରେ ଲୋର
ସବୁ ସୁଖ ହୁଏ ମୋର କୋମଳ
ସବୁ ହାସ ଅଶ୍ରୁରେ ସଜଳ !

# ଜୀବନ-ଦୋଳି

ଚୂତର ମୁକୁଳ ବାସେ    ଆଗମନୀ ଆସିଲା
  ଆସିଲା ସେ ପଥେ ଧାଇଁ ପବନେ
ପୁଲକାର ଢଳସାର    ଚମ୍ପକର ବର୍ଣ୍ଣ
  ଆସିଲା ମୋ ଜରଗତ ଜୀବନେ
ଧରଣୀର ଧୂଳିରାଶି    ମହକିଲା ସହସା
  ଶୋଭେ ଦଶ କୁସୁମିତ ବସନେ।

ରଙ୍ଗର ଢେଉ ନାଚେ    ଝଲେ ବାଜେ ଝରର
  ଗନ୍ଧର ଢେଉ ଛୁଟି ଉଠଇ

ମହାଦ୍ୱୀପ

ମଳୟର ନିଃଶ୍ୱର
ଫେରି ଆସେ ମନରେ
ସ୍ୱର୍ଗର ପାରିଜାତ ଫୁଲ
ଫେରିଆସେ ଯୌବନ
ହୃଦୟ ଗହନରେ
ବନ୍ଧନରଶ୍ମି ଅଙ୍କ ଛୁଟଇ ।

ଦୂର ଦେଶୁଁ ପରବାସୀ
ଆସେ ଫେରି ଘରକୁ
ଲେଉଟଇ ପିକ ପୁଣି ଆବାସେ
ପ୍ରିୟ ମୋର ଆସେ ନାହିଁ
ଶୂନ୍ୟ ଏ ଭୁବନର
ମୃଦୁ ହାସେ ହସ୍ତ ହୋଇ ଅବା ସେ।
କେଉଁ ଦେଶେ ଲଭି ରହେ
ସନ୍ଧାନ ନାହିଁ ଯେ
ଧନ ଯାଏ ଅନ୍ତର ସଙ୍ଗେ।

ମଧୁମାସ ପରଶରେ
ବଢ଼େ ମନ ଉଲ୍ଲାସ
ମୃଦୁମନ୍ଦ ନିଶ୍ୱାସ ଛାଡ଼ଇ
ବାସିଫୁଲ ସମ ବେଳେ
ଝଡ଼ ପଡ଼େ ବାସନା
ଲୁହିଁ ଲୁହିଁ ଅଶ୍ରୁଧାରା ଝରଇ
ସଙ୍ଗୀତ ଆସି ବେଳେ
ଟଗରେ ପୁଣି ଭଣ୍ଡ
ସଙ୍କୋଚେ ମନପ୍ରାଣ କ୍ରୀଡ଼ଇ ।

କେତେ ମଧୁ ମିଳନର
ଦେଖିଲଇଁ ସ୍ୱପନ
କେତେ ଚନ୍ଦ୍ର ମଲ୍ଲୀ ଢୋଲାଲି

ବିଚ୍ଛେଦ ଧାରେ ଯେତେ ବହିଯାଏ ରୁଧିର
ଅନ୍ତର ତଳେ ତାହା ବୋଲିଲି
ବସନ୍ତର ଦୋଳି ଚଢ଼ି ମିଳନର ମଳୟେ
ଖେଳିଲି ଜୀବନଯାକ ଦୋଳିଲି ।



## ପଥ କାହିଁ ?

(ସଙ୍ଗୀତ)

ହେ ସାରଥି ଅନ୍ଧ ତମପାଶେ ଏ କି ବ୍ୟୂହ
ନ ଚଳେ ତୁରଗ ନ ପାରଇ ରଥ ବାହୁ
ଯେଉଁ ଦେଶେ ମୁଖ ଫେରାଅ ଶୁଭଇ ବାଣୀ—
ପଥ କାହିଁ ? ପଥ କାହିଁ ?

ଅଚଳ ପ୍ରାଚୀର ଆକାଶେ ଠେକିଛି ଶିର
ସବଳ ଭୁଜର ଯୁଦ୍ଧ ହେଲା ହେ ବୀର !
ଶୂନ୍ୟ ହୋଇଛି ତୂଣୀରୁ ତୋହର ତୀର
ଲଭ ନାହିଁ ଆଶା ଶତ୍ରୁ ବିଜୟ ପାଇଁ
ପଥ କାହିଁ ? ପଥ କାହିଁ ?

ହେ ଗାୟକ ତୋର ମୁଖରିତ ମୂର୍ଚ୍ଛନା
ନୀରବିଲା ସବୁ ଅନ୍ତର ଅରଚନା
ଯେ ଗୀତ ରଚିଲୁ ଆରେ ଶବ ଆନମନା !
କଣ୍ଠ ତୋହର ନ ପାରିଲା ତାହା ଗାଇ,
ପଥ କାହିଁ ? ପଥ କାହିଁ ?

ସକଳ ପ୍ରଦୀପ ନିଭିଗଲା ଅନ୍ଧ ପୁରେ
ଝଙ୍କସ୍ତୁ ଶଙ୍ଖ ନ ଉଠିଲା ବାଜି ଦୂରେ
କାହା ଆଗମନ ପାଇଁ ଅଶାହ୍ୱାନ ତୁ ରେ !
ଚକିତ ନୟନେ ବନ୍ଧୁ ଚହଟାଏ ଚାହିଁ
ପଥ କାହିଁ ? ପଥ କାହିଁ ?

ଧ୍ୱଂସର ତାଳ ଘୂରି ଆସେ ଦଣ ଦଣ୍ଡ
ରଣଭେରୀ ତୋର ସେ ଭ୍ରମ ଶବଦେ ମିଶୁ
ମରଣ୍ଡୁ ତୋହର ମୁକତି ରେ ବୀର ଶିଶୁ !
ତନ୍ନ ଭାଳ ତୋର ଜୀବନର ଅନୁଯାୟୀ
ପଥ କାହିଁ ? ପଥ କାହିଁ ? *



* ଚକ୍ରଭାଟିର ଅନ୍ୟ ନାମ "ଅଭିମନ୍ୟୁ" ହୋଇ ପାରେ ।

## ବର୍ଷା-ଅଶ୍ରୁ

ହେ ବରଷା ତବ ସ୍ରୋତେ,
ଅଶ୍ରୁ-ସଲିଳେ ନିର୍ମଳ କର ମୋତେ ।
ଅନ୍ତରେ କେତେ ଜମିଲାଣି ପାପ
ବଳାନ୍ତୁ ଶୁଷ୍କ ନିଦାଘର ତାପ
ପୂର୍ଣ୍ଣ ନିଶାଣ ଉଡ଼ାଇ ଗଗନେ
ବଜ୍ର ଚପଳା ରଥେ —
ଅଶ୍ରୁ-ସଲିଳେ ନିର୍ମଳ କର ମୋତେ ।

## ମହାଦାସ

ରସହୀନ ମମ ଅନ୍ତରମରୁ ପୀଡ଼ିତ ତୃଷିତ ଶର
ଜୀବନ ମରୁରେ ନୟନେ ନ ଜାଗେ ନୀର !
ତପ୍ତ ତୃଷ୍ଣା ମୋ କଳୁଷ ଝଡ଼ରେ
ଝରପଡ଼ୁ ଧୀରେ ସଜଳ ଘନରେ
ଅମୃତ ଭଳ ବନ୍ଧୁ ଅଶ୍ରୁ ନବ
ସାନ୍ତ୍ୱନା ହୃଦଗତେ
ଅଶ୍ରୁ-ସଲିଳେ ନିର୍ମଳ କର ମୋତେ ।

ପ୍ରାନ୍ତର ପଥେ ଫେଲାଉଠୁ ଶ୍ୟାମ ଘାସ
ଅନ୍ତରେ ଫୁଟୁ କୋମଳ କମଳ-ହାସ
ନିର୍ମଳ କର ଆଲୋକ ପବନ
ନିର୍ମଳ କର ଧରଣୀ ଗଗନ
ଜୀବନର ଧାରା ଦିଅ ହେ ଖୋଲାଇ
ଚଳନ୍ତେ ସଜଳ ପଥେ
ଅଶ୍ରୁ-ସଲିଳେ ନିର୍ମଳ କର ମୋତେ ।

# ବଂଶୀ ଧ୍ୱନି

ରଖିଦେବ ନାହିଁ କି ଆଜ ଏ ବାଆ ?
ଛଳେ ଦେଲେ ଭାବ ଗୋ ନାହିଁ ତ ମାୟା !
ଯେବେ ସବୁ ବଇଁଶୀ ଶବଦ ଶୁଣି
ଛୁଟିଲେ ଲାଜ ଗୋ ଗୋପ ତରୁଣୀ !
ଫିଟିଗଲା କବରୀ ତୁଟିଲା ହାର
ପୁଲକରେ ଝରିଲା ଲୋତକ ଧାର,
ତୁଅ ତୁଅ ହୋଇ ସେ ଶୁଭିଲା ସ୍ୱନ,
ଛନଛନ ହୋଇଲା ପରାଣ ମନ ।
ଖସିଗଲା କଳସୀ କାଖରୁ ତଳେ
ଚରଣ ଯୁଗଲ ସେ ଛନ୍ତ୍ରିଲା ଜଳେ,
ଅଯତନ ବେଶ ଗୋ ବାସ ଭୂଷଣ
କି ଶବଦ ବହିଲା ଏତେ କଷଣ !
ଜନନୀଙ୍କୁ ନ ଦେଖି କାନ୍ଦେ ନନ୍ଦନ
ନ ମାନଇ ଦୁହିତା ପିତା ବଚନ !
ସ୍ୱାମୀ କଥା ନ ଶୁଣେ କୁଳ ରମଣୀ
ସମାଜର ନିୟମ କେହୁ ନ ଗଣି !

ଝୁଣୁ ଝୁଣୁ ଶବଦେ ପୂରଲା ଦାଣ୍ଡ
ଅଭୂଷଣ କଥା ଗୋ ଅରୂପ କାଣ୍ଡ !
କି ଥିଲା ସେ ଶବଦେ ହୋଇ ଆକୁଳ
କୂଳ ଭୁଅସୁଣୀ ଚ ଦେଖିଲେ କୂଳ !
ଆଜି ଏହୁ ଅଥିର ପବନେ ମିଶି
ମୁହୁର ସେ ପାରୁଁ କି କାନେ ବଇଁଶୀ ?
ଭାସିଆସେ କେସନ ସେ ମୃଦୁ ଧ୍ୱନି
ଛନ୍ଦ ରେଣୁ-କଣାରେ ଥରେ ଅବନୀ ।
କୋଇଲାର ପଥେ ସେ ଆସଇ ଝର
ବସନ୍ତର ବଢାସେ ବହଇ ଥର,
ଏହୁ ଗୁନ୍ଦ ଛଳେ କି ବହାର ଶଧି
ରଣଥିବେ ରସିକ ଯଶୋଦାନିଧି ?
ଗୋପେ ଉଠୁଥିଲା ସେ ସ୍ୱନ ଲହରୀ
ଆଜି ଶୁଭେ ସେ ଧ୍ୱନି ଭୁବନ ଭରି,
ନବ ନବ ଛନ୍ଦେ ସେ ଉଠଇ ବାଜି
ନବ ନବ ସ୍ପନ୍ଦନ ରଚଇ ଆଜି !



## ନୀରବ ଆହ୍ୱାନ

ଏ ଜୀବନ ଗୋଷ୍ଠୀ ମୁଁ ଗୋ ଗାଇ ଯିବ
ବେଦନାର ବହଳ ଅନ୍ଧାରେ,
ଦିବସର ଦୁଃଖରାଶି ବହିଯିବ
ବକୁଳର ବ୍ୟଥିତ ସନ୍ଧ୍ୟାରେ ।

ନଈର ପ୍ରବାହେ ଅଙ୍କ ସଂସାରର
ଶତଫଣୀ ଜନମର ସ୍ରୋତେ
ଯେବେ) ବ୍ୟର୍ଥତାର ମର୍ମପୀଡ଼ା ଭର ଦିନ
ଶତ ଧାରେ ଝରିଯାଏ ମୋତେ ।

## ମହାକାଶ

ଅପୂର୍ଣ୍ଣ ବାସନାସୃଷ୍ଟି ଅହରହ
ଯେବେ ମୋର ଭରାଏ ଅନ୍ତର,
ସେ ମିନତି ଶୁଣିବ ଏ ଆକାଶର
ନୈଶପ୍ରାନ୍ତ କମ୍ପିତ ତାରକ ।

ଜଗତ ଦୃଷ୍ଟିରେ ଯେବେ ଅତି ହୀନ
ଏ ଜୀବନେ ଯେବେ ମୂଲ୍ୟ ନାହିଁ,
ମୋ କରୁଣଗାଥା ଗୋଟି କହିଯିବ
ସୁଦୂର ଏ ତାରାମୂଳେ ଗୁହିଁ ।

ନ ଶୁଣଇ କେହି ଯଦି ଘୃଣାଭରେ
ଯାହା ମୁଁ ଗୋ ଗାଉଛି ବିଳାପେ
ଅନ୍ତର ନିଗାଡ଼ି ମୋର ସବୁ ସ୍ୱର
ଢାଳିଦେବ ଦକ୍ଷିଣ ବତାସେ ।

ସଫଳ ହୁଅଇ ଯେବେ ସବୁ ଆଶା
ବ୍ୟର୍ଥ ଯେବେ ସକଳ ସାଧନା
ଶୈଶବନେହ ଅନ୍ତସ୍ତଳେ ରଖିବ ମୋ
ସ୍ୱପ୍ନ ରାଜ୍ୟ ବିଶ୍ୱ-କଳ୍ପନା ।

## ମହାଦୀପ

ସବ୍ରଣର ଶ୍ରେଷ୍ଠତମ ସ୍ୱରଧାର
ନୀରବତା ମଧ୍ୟେ ଯିବ ମିଶି,
ପ୍ରାଣପ୍ରିୟ ଆଶାରାଶି ମେଣ୍ଟାଇବ
ସ୍ୱପ୍ନ-ଦେଶେ ଘନ ଅର୍ଦ୍ଧନଶି ।

ସହସ୍ର ବସଥେ ସଥେ ଜଗତରେ
ବହ୍ନୁ ତପ୍ତ ଅଶାନ୍ତିର ବ୍ୟାଧି
ଆଷାଢ଼ର ଆର୍ଦ୍ର ଗନ୍ଧେ ଘାସପଟେର
ରଚିବ ମୋ ନୀରବ ସମାଧି ।



## ଶରତ୍-ସନ୍ଧ୍ୟା

ଢେନାଲିର ଅର ପାଖେ
ଛାଲବନ ଫାଁକେ ଫାଁକେ
ଧବଳିମ କାଶବନ ହସଇ
ପ୍ରତୀଚୀର କୋଳେ ରଙ୍ଗ ଖସଇ ।

ଢେନାଲର ଦୁଇ କୂଳେ
ଛାଲଗଛ ଧାଡ଼ି ମୂଳେ
ଫୁଲ୍‌ଜଟେ ଗରବଉ ପାଣି ରେ !
ଉଦ୍‌ଭ୍ରାନ୍ତ ଯଜ୍ଞବନ ଠାଣିରେ ।

ମନ୍ଥର ଧୀର ଅତି
ଅଚପଳ ଜଳଗତି
ଚଳେ ତାର ଛାଲଗଛ ଛାଇରେ
କାଟିଛି ସରଳ ରେଖା ମଝିରେ ।

## ମହାଦୀପ

ଭୁଲିଛି ମୁଁ ସଙ୍ଗେ ତାର
କି ଦୁଷ୍ଟ ଅଭିସାର !
ଭୁଲିଛି ମୁଁ ଦୂରେ ଦେଇଁ ଦୂରେ ଗୋ
କି ବା ଗନ୍ଧେ ଅନ୍ତର ପୂରେ ମୋ ।

ଆଜି ଖାଲି କହେ କଥା
ଚଉପାଶେ ନୀରବତା
ହୃଦୟର ଧୁକୁ ଧୁକୁ ଶବଦ
ନିଃଶ୍ୱାସ ଅତି ଧୀରେ ବହଇ ।

ଅତୀତର ଯେତେ କ୍ଷଣ
ନୀରବଲା ଅକାରଣ
ବିତିଗଲା ଦିନ ଦୁଃଖ ସୁଖର
ହେଲା ନାହିଁ ଯାହା କେବେ ମୁଖର;

ସେହି ମୋର ହେଲା ପ୍ରିୟ
ସବୁଠାରୁ କମନୀୟ
ସେହି ମୋର ଅନାଗତ ରାଗିଣୀ
ଯାହା କେବେ ଏ ଜୀବନେ ବାଜିନ ।

ଭରି ସେହି ନୀରବତା
ଧାନକ୍ଷେତ କହେ କଥା
ରଞ୍ଜିତ ନଭପଥେ ଝଲକେ
ନୀଳ ମେଘ ଖେଳେ ସୁନା ଆଲୋକେ !

## ମହାଯୋଗ

ଧାନଖେତ ଡାକେ ମୋତେ
ହାତ ଠାରି ଅବା ସତେ
କାମ ଛାଡ଼ି ନୀରବରେ ଦେଖିବା
ଆଳି ଖାଲ ବସି ଛବି ଲେଖିବା !

କାଶବନ କହେ, "ବାରେ
ଭୁଲିଯାଅ ପଥ ଆରେ
ରହିଯାଅ ସାବଧାନ ପାନ୍ଥ !
ଧରିବେ ଶେଫାଳି ଛବି କାନ୍ତ !"

ଭୁଲି ଜଗ ଯନ୍ତ୍ରବନ,
ସପନ ବା ଜାଗରଣ
ଅତୀତର ଶତ ସୁଖ ଯାତନା
ଆଗାମୀର ନବ ଆଶା ବାସନା !

ଦେଖିଯାଅ ରୂପ ଛବି,
ଦୂର ପାଟେ ବୁଡ଼େ ରବି
ଶରତର ଆଜି ସୁନା ଆକାଶ
ଅନ୍ତରେ ଲକ୍ଷ୍ୟ ଛାଡ଼ ବିକାଶ ।

ଆଖିମସ୍ତ ଦେହ ମମ
ଲାଗେ ମଧୁଲିଟ ସମ
ସୁଷମାର ମଧୁପାନେ ରମଇ
ଅସ୍ଥିର ପାଦ ନାହିଁ ଗମଇ ।

## ସନ୍ଧାଦୀପ

ବେଗେ ଆସେ ବେଢ଼ି ସନ୍ଧ୍ୟା
ଏଣୁ ପଥେ ରହେ ଅନ୍ଧା
ସବୁ ଶୋଭା ନିମେଷରେ ଗୁପତ
ରୂପରଙ୍ଗ ନୋହେ କାହିଁ ବ୍ୟକତ !

# ପାପ

ଜୀବନେ ଯେତେ କରିଛୁ ଜାଣି ପାପ
ତା'ପାଇଁ ନାହିଁ ବେଦନା ଅନୁତାପ
ପୀରତଠାରୁ ଅଧିକ ପ୍ରିୟ
ଲାଜରୁ ବଳି ସେ ଗୋପନୀୟ
ଦୁଃଖରୁ ବେଶି କୋମଳତର
ସ୍ୱର୍ଗରୁ ଲୋଭନୀୟ,
ପୀରତଠାରୁ ଅଧିକ ସେ ଯେ ପ୍ରିୟ ।

## ମହାପାପ

ଜୀବନେ ଅନୁଭବୁଛି ଯେତେ ଲାଜ
ସେ ନୁହେଁ ତ୍ରୁଟି, ସେ ନୁହେଁ ମୋର ବ୍ୟାଜ
ପେଲିବ ସେ ଯେ ପରଶ ଥିଲା
ମଧୁର ଶିଶୁ ପ୍ରାଣର ଲୀଳା
ରମଣୀ-ହୃଦୟା-ସୁଲଭ ଏକ
ଚତୁର ରୁଦ୍ଧ ବ୍ରୀଡ଼ା,
ପେଲିବ ସେ ଯେ ପରଶ ଏକ ଥିଲା ।

ଜୀବନପଥେ ଉଦିଲା ଯେତେ ଭୟ
ଡରିଲି ମନ, ଥରିଲି ଦେହମୟ
ସେ ଆଜି ମୋର ହୋଇଛି ଭଲ
ଆଣିଛି ମନେ ଅସୀମ ବଳ
ନୟନ କୋଣୁ ଦେଇଛି ପୋଛି
ସନ୍ଧ୍ୟାସ୍ପୃହୀନ ଜଳ
ସେ ଆଜି ମୋର ହୋଇଛି ବଡ଼ ଭଲ ।

ଲଭିଛି ଯେତେ ଦୀନତା ଅପମାନ
ସେ ଆଜି ମୋତେ ପାରି ନ କରି ସାନ
ପାରି ନ କରି ଗରବ କ୍ଷୟ
ହୋଇଛି ଖ୍ୟାତ ସେ ମୋର ଜୟ
ଅଜଣା ଅତି ଅଶୁଣା ପଥେ
ସେ ମୋର ସହଚୟ
ଶିଖି ନ କରି ଗରବ ସେ ତ କ୍ଷୟ ।

ଦେବତା ସମ ମାନିଲି ଯେତେ ବାଧି
ବସ୍ତୁ ବର୍ତ୍ତୀନ ହୃଦୟେ କରି ନିଧି
ମାନିଲି ଯେତେ ନ ପାରି ବୁଝି
ନ ଦେଖି ରୂପ ନୟନ ବୁଜି
ନ ଗଣ୍ଣି ଦୁଃଖ ଗଲେ ସେ ଭୁଟି
ଗଲେ ସେ ଭାଂଗି ଛୁଟି
ମାନିଲି ଯେତେ ନ ପାରି କିଛି ବୁଝି ।

ଦେଇଛୁ ନିଜେ ପାଇଛୁ ଯେତେ ଘୃଣା
ସେ ଲାଗି ତଳେ ନୋଇଛୁ ମୁଁ ଯେ ଊଣା
ଦେଖାଇ ଆଶା କରିଛୁ ଲୋଭ
ଦେଇଛୁ ଦୁଃଖ ବଢ଼ିଛୁ କ୍ଷୋଭ
ପ୍ରେମର କେତେ ସରଗ ସୁଖ
ବ୍ୟଥାର ଅନୁଭବ
ଦେଖାଇ ଆଶା କରିଲି କେତେ ଲୋଭ ।

ନୂତନ ଦୁଃଖ ଆସିଛି ଦୁଃଖ ପରେ
ନୂତନ ପାପ ଜନ୍ମିଛି ପୁଣି ଥରେ
ପୁରୁଣା ସ୍ମୃତି ହୋଇଛି ମାୟା
ପୁରୁଣା ଦୁଃଖ ଯେପରି ଛାୟା
ନୂତନ ପାପ ଦେଖାଏ ପୁଣି
କାଳିମାମୟ କାୟା
ପୁରୁଣା ଯେତେ ହୋଇଛି ସବୁ ମାୟା ।

## ପଶ୍ଚାତାପ

କହଇ ଜଣେ ଯାହାକୁ ଅନୁତାପ
ଅପର ଲାଗି ନୁହଇ ସେ ତ ପାପ
କପାଁର ତେବେ କହିବ ଜାଗି
ପାପର ଭୟେ ମରିବା ଲାଗି
ନିଜକୁ କପାଁ ଅହତ କର
ହୋଇବ ହତଭାଗୀ
ପାପର ଭୟେ କପାଇଁ ଥିବ ଜାଗି !



# ଦେବଶିଶୁ

କିଏ ଦେବଶିଶୁ ମାନବର ରୂପ ବହି
ବିଚରଣ କରେ ଧରାଧାମେ ଅବିରତ ?
ଯାହାର ପ୍ରଥମ କ୍ରନ୍ଦନ ଶୁଣି ମହୀ
ହସଇ ବିକାଶି ଅଭିନବ ରୂପ ଶତ !
ଯାହାର ଚରଣ ସ୍ପନ୍ଦନେ କ୍ଷଣେ କ୍ଷଣେ
ବାଜଇ ମଧୁର ମୂର୍ଚ୍ଛନା ବହି ବହି
ଦେବତାର ରୂପ ମାନବରେ ପରିଣତ
ନବ ନବ ନଃ ଘେନ କେଉଁ ଆଚରଣେ ?

ଜଗତର ବୁକେ ବିଷ ଦେଇଛ ,ପାତି
ରୁଧିର ଶିଗାଳ ଡାକୁଅଛ "ଆସ ଆସ,
ଆସ ବୀର ଆସ ମହା ରଣମଦେ ମାତି
ଲିଭି ନାହିଁ ମମ ଅଙ୍ଗ ହନନ ପ୍ରାସ !
ଆସ ହେ ରୁଦ୍ର ଆସ ମରଣର ଜନ୍ମି
ଆସ ଦୀନ ହୀନ, ଆସ ରେ ମାନବଜାତି
ମରଣକୁ ମୋର କରିଯାଅ ଉପହାସ
ମୃତ ଧରଣୀର ଅମୃତ ଭାଷା କହି !

କଣ୍ଟକ କ୍ଷତ ଲଭ ନାହିଁ ମୋର ଦେହୁଁ
ଆଘାତ ମୋହକ ଲାଗେ ସବୁ ଅବସରେ
ତଥାପି କହଇଁ କ୍ଷମା ଦିଅ ତାଙ୍କୁ, ସେହୁ
ଆପଣା ଚରିତ ଯାଉ ନାହିଁ ବୁଝି ଲଭେ !
ତଥାପି କହଇଁ ଆସ ରେ ମାନବଜାତି
ଘୃଣରେ ତୋହର ଧର୍ମ ସଦାଘାତ ଦେଇ
ଈପ୍ସିରେ ତୋର ପଥ ଗଢ଼ିଦିଅ ଭବେ
ଅଲୋକେକ ତୋହର ହସି ଜ୍ୟୋତି ଅମ୍ଳା ଗତି !
ଆସ ହୁତ ଆସ ଆସ ରେ ଆଲୋକଧାର
ଆସ ରେ ଅଗ୍ର ଦେଖାଅ ବିଶ୍ୱପଥ
ରଣ ରେ ଘୋଡ଼ାଇ ଦୀନର ନୟନବାଞ୍ଛ
ଶଙ୍ଖ ତୋହର ବାଜୁ ଜ୍ୟୋତି ଅବିରତ ।
ଜ୍ୱାଳି ଦିଅ ବୀରଜୀବନର ହୋମାନଳ
ଆସ ଦୁର୍ଦ୍ଦମ, ଆସ ହେ ପୁରୁଷ ନାରୀ ।
ମାନବର ରୂପେ ଦେବଶିଶୁ ଶତ ଶତ
ନବ ଚେତନାରେ ଚମକୁ ଗଗନତଳ !"



## ସୃଜନ ବ୍ୟଥା

କେତେ ତେଜ୍ ଉଠେ ଫୁଟେ
ବିଶ୍ୱର ମାନବ-ପାଶ୍ୱଦାରେ
କେତେ ଧ୍ୱନି କେତେ ଛନ୍ଦ
ମିଳାଏ ଯେ ଅସୀମର ପାରେ ।

ନିତି ଷଣେ ଷଣେ କେତେ ନବ ନବ ଛବି
ମୃତ୍ୟୁମୂର୍ଚ୍ଛୁ ପ୍ରାଣେ ଅନୁଭବ ·
ସବୁ ଛନ୍ଦ ସବୁ ଛବି ଅସୀମରେ ହୁଅଇ ବିଲୀନ
ନ ରହେ ସଙ୍କେତ କାହିଁ ନାହିଁ ରହେ ତଳେ ତା'ର ଶବ୍ଦ ।

## ମହାଦ୍ୱୀପ

କେତେ ମେଘ ଉଡ଼େ ହୋଇ ଶୈଳ ଚୂଡ଼ାପରେ
ଯାଏ ସେ ମିଳାଇ ପଲକରେ
ନ ଦେଖୁଁ ନିଜର ପଥ, ଦେହେ ତାର ବିଜୁଳି ଚମକ
ନ ଲାଗୁଁ, ଅସୀମ ଦେଶେ ନିଭିଯାଏ, ନ ହୁଏ ବିଳୋକ ।

ତୈଳହୀନ ପ୍ରଦୀପର କ୍ଷୀଣ ରଶ୍ମି ରେଖା
ନିମେଷକ ଲାଗି ଦିଏ ଦେଖା
ନିମେଷକ ପରେ ପୁଣି ନିବିଡ଼ ତମସା ଅନ୍ତରାଳେ
କାହିଁ ସେ ଉଭେଇ ଯାଏ ଦେଖିଅଛୁ କିଏ କେଉଁ କାଳେ ?

କେତେ ଉଲ୍କା ପଡ଼େ ଖସି ଗଗନର ପଥେ
ସକରୁଣ ହାସ ଏ ଜଗତେ
ନିମେଷରେ ଦେଖା ଦେଇ ନିମେଷରେ ଯାଏ କାହିଁ ଦୂର,
ଏ ଆକାଶେ ଚିହ୍ନ ତାର ରହେ କାହିଁ, ରହେ କାହିଁ ଛବି !

କେତେ ଝର ହଜିଯାଏ ନ ମିଶୁଁ ସାଗରେ
ଅଜ୍ଞାତ ପାଷାଣ ଗହ୍ୱରେ ।
ଚିରକାଳ ପାଇଁ ତାର ଜୀବନର କ୍ଷୀଣ ଇତିହାସ
ଏ ଭୁବନ କୋଳାହଳେ ଅବହେଳେ ରହେ ଅପ୍ରକାଶ ।
ନ ଦେଖୁଁ ଆଲୋକ ଧରାତଳେ ପଡ଼େ ଝରି
ଅଶୋକର ପେଲବ ମଞ୍ଜରୀ ।

## ମହାଯାତ

ବହୁଯାଏ ସମୀରଣ ସମାଗୃର ନାହିଁ ପାଏ ତାର,
ମଧୁକର ଆନମନେ ଫୁଲେ ଫୁଲେ ରଚଇ ଝଙ୍କାର,
ହଜିଯାଏ ଯେତେ ଧନ ନାହିଁ ଯାର ସତ୍ତା
କେହୁ ତାର ନ ପୁଛେ ବାରତା !

\+ \+ \+

ଯେସନ ଜଳଦସ୍ଥ ହୋଇ ବସ୍ତ ମାନବ-ପାରାବାରେ
ବୁଦ୍‌ବୁଦ ସମାନ ଭାହିଁ ଯାଏ ସେ ମିଳାଇ ଅନ୍ଧକାରେ,
ଜୀବନର ସୂକ୍ଷ୍ମତମ ଏକଗୋଟି କଣା !
ନୂତନ ସଚେଜ ସରଜନା !

ହବୁର ପଛରେ ଆସି ଚଳିଯାଏ ସକଳର ଅଂଗେ,
ଅଧର ନ ହେଉଁ ତାର ବରଣତ ନବ ହାସ୍ୟରାଗେ,
ଆସିଥାଏ ସ୍ପନ୍ଦନର ଭାଷା ଯେନ ଗାଲି
ଶେଷ ସ୍ପନ୍ଦନରେ ଯାଏ ଭୁଲ୍ !

ପୂର୍ଣ୍ଣ ଦୁଇଗୋଟି ଶଶୀ ନ ଖେଳୁଣୁ ତା'ନୟନ ପରେ
ନ ଶିଖୁଁ ଡାକିବା ପାଇଁ ଚୋଳ ତାକୁ କ୍ଷୁଦ୍ର ଦୁଇ କରେ
ଦଉଟି ଶଶୀରେ ତାର ସରିଯାଏ କ୍ରୀଡ଼ା !
ନ ଦେଖଇ ସୁଖ 'ପୀଡ଼ା,

ନ ପାରଇ ବୁଝି କେହୁ ମୃଦୁ ପ୍ରାଣେ କିବା ଅନୁଭୂତ
ଲାଗେ ତାର ଅନ୍ତରରେ; ଆଣିଥାଏ ସେ କେଉଁ ବହୂତ,
କରିବାକୁ ଏ ଭୁବନ ପଥେ ନିବେଦନ
ଅଦ୍ଭୁତ ଓ ଉଦ୍‌ଭାବନ !

କ୍ଷଣିକ ଅଘଟ ଅଟେ ସେ କ୍ଷଣ ପରେ ଭୁଲିଯାଏ ନର,
ଭାବେ, ଏଥି ନାହିଁ କ୍ଷତ ନାହିଁ ଲାଭ ନାହିଁ ଜୀବନର,
ଜ୍ଞାନର ଛଳନା କରି କହେଁ, ଏଥି ଶାନ୍ତ
ବିଚଳିତ ହେବା ଅନୁଚିତ ।”

ଅର୍ଥହୀନ ବୋଲି ମଣେ ବୁଦ୍ଧିହୀନ ମାନବସନ୍ତାନ
ନଶ୍ୱରର ପଥେ ତାର ଏଣ୍ଟୁବନେ ନାହିଁ ଯାର ସ୍ଥାନ,
ନ ବୁଝେ କର୍ମିତ କରେ ସଧୀର ତରଙ୍ଗ
ମହା ନୀଳିମାର ସବୁ ଅଙ୍ଗ;

ବିହଙ୍ଗର ଗତ ପୁଣି କ୍ଷୀଣତମ ସ୍ୱରର ଗୁଞ୍ଜନ
ସକଳ ଆକାଶଦେଶେ ଜଗାଏ କି ବ୍ୟଥିତ ସ୍ପନ୍ଦନ
ଏକ ଅଙ୍ଗେ ଲାଗେ ଯେବେ ଆଘାତ ବେଦନା
ଛୁଟେ ତାର ବ୍ୟଥିତ ଦ୍ୟୋତନା ।

ସକଳ ଶରୀର ପରେ, ପ୍ରାଣମୂଳେ ବାଜଇ ଝଙ୍କାର
ଅନ୍ତର ମଥିତ କରେ ଅପହୃତ ଧନ ଆଶଙ୍କାର
ସୃଷ୍ଟିର ବିରାଟ ପ୍ରାଣେ ତଥା ଅହରହ
ଲାଗଇ ଯେ ଦୁରନ୍ତ ବିରହ !

ଗଳଇ ରୁଧିରରାଶି ଚରଣର କ୍ଷତ ଅବକାଶ
ନିତ ପ୍ରଦୋଷ ଛଟାରେ ସେ ବେଦନା ଲଭିଛି ପ୍ରକାଶ
ପଶ୍ଚିମ ପ୍ରତୀଚୀ ସ୍ଥଳେ ରକତର ରାଗେ,
ଚରଣର ଶତ କ୍ଷତ ଦାଗେ ।

ବିଚିହ୍ନିତ ଏ ଭୁବନ; ଲୁପ୍ତ ଝରଣାର ବ୍ୟଥା ବନ୍ଧ
ଝରିପଡ଼େ ଯେ କୋରକ କୋଟି ବିୟୋଗର ହ୍ରାସ ସନ୍ଧ
ସୃଜନର ଅଶ୍ରୁରାଶି ଝରି ପଡ଼େ ସଦା;
ଏ ଧରଣୀ ହୁଏ ତନ୍ତ୍ରୀ ଉଦା ।

ଆଶ୍ୱିନର ଉଷା-ଘ'ସେ ମୁକୁତା ତୁଷାର ପଡ଼େ ଝରି
ସବୁଜ ବେଦନା ପରେ ଲୋତକ ଉଠଇ କବା ଭରି ।
ଆଷାଢ଼ ମାଟିର ବ୍ୟଥା ହୁଅଇ ପ୍ରକାଶ
କମ୍ପନରେ ଜାଗଇ ଆକାଶ ।

ରୁଦ୍ଧ ହୃଦୟ ଆବେଗ ନୟନ ଜଳରେ ଢଏ ଢାଳ;
ପତ୍ରହତ କଣ୍ଠ ଯଥା ଲୋତକରେ ଦିଅଇ ପଖାଳ
ଅପ୍ରକାଶ ଅନାଗତ ବେଦନାର ଛନ୍ଦ;
ଫାଟି ପଡ଼େ ହୃଦୟର ବନ୍ଧ,

ଦନ୍ତ ତା'ର ଯାଏ ତୁଟି, କଣ୍ଠେ ତା'ର ଶୁଖିଯାଏ ଗାନ,
ସୃଜନ ବ୍ୟଥାରେ ତା'ର ଅନ୍ତର ଲଭଇ ମ୍ରିୟମାଣ ।
ସକଳ କଳା-ଶିଳ୍ପୀ ପାରେ ଅନୁଭବ
ଶେଷ ଯେତୁ ତୂଳିକାରେ ଛବି ।

ରୂପ ଖୋଜ ଅରୂପରେ ପ୍ରାଣ ତା'ର ହୁଏ ନିମଗନ
ଅନ୍ତରେ ବାଜଇ କେତେ ସୃଜନର ନିବିଡ଼ ବେଦନ ।
ଉଦେ ହୁଏ କେତେ ଛବି ମାନସପଟରେ
ବିଶ୍ୱରେ ଲଭିବ ନିକଟରେ ।

ଭୁଲକା ରଞ୍ଜିତ କର ଧରିବାକୁ ବଢ଼ାଇଲେ କର
ମଶ୍ୱଶକା ସମ ସେ ଯେ କ୍ଷଣ ପରେ ହୁଅଇ ଅନ୍ତର
ଛନ୍ଦ ଆଣେ କଣ୍ଠକର ବସିଲେ ସଜାଇ
ଆସି କ୍ଷଣେ ଯାଏ ସେ ଉଭାଇ ।

ସତ୍ୟର ପ୍ରକାଶ ଆଣେ ଯେ କରଇ ପ୍ରାଣାନ୍ତ ସାଧନା,
ମରମେ ବୁଝଇ ସେହୁ ସୃଜନର ନଗମ ବେଦନା ।
ଯେ ବାସନା ବହୁ ଯୁଗୁଁ ପରାଣେ ସଞ୍ଚିତ
କଳ୍ପନାର ଭୂଷଣେ ବ୍ୟଞ୍ଜିତ ।

ମାନବ ଅନ୍ତରତଳେ ଆଜ କାହିଁ ରହିଛି ଯେ ଦାଗ
କେତେ ଯତ୍ନେ କେତେ ପ୍ରାଣେ ବୋଳି ତହିଁ ନବ ଅନୁରାଗ,
କରଇ ଜୀବନ ତାଳ ସେନେହେ ଲଳିତ;
କେତେ ଶଙ୍କା ଆବେଗରେ ଶତ୍ରୁ;

ଉଦ୍‌ବେଳିତ କରେ ତାହା ! ତେସନ ନାହିଁର ଅନ୍ତସ୍ଥଳେ
ଦେହ ମନ ଅବସ୍ଥରେ ସୃଜନ ବ୍ୟଥାର ରକ୍ତ ଗଳେ ।
ଯେଉଁ କାହ୍ନ ଆଜ ନାହିଁ ଲଭୁଛି ଜନମ,
ଏ ବ୍ୟଥାରେ ବ୍ୟଥିଛି ମରମ;

ସେହିକାହ୍ନ ଶୁଣିଅଛି ଅଜାତ ସେ ଶିଶୁର କ୍ରନ୍ଦନ
ଅନ୍ତରେ ଅନ୍ତରେ ତାର ଲଳିଛି ସେ ପ୍ରାଣର ନନ୍ଦନ,
ତୃପ୍ତିହୀନ ଆଶା ବନ୍ଧ ପରଶ ପରଶେ
ବସି ରହେ ତାହାର ସକାଶେ !

× × × ×

ନୀରସ ଧରଣୀ ବସେ ଗୁହ୍ଣି ଯଥା ବରଷା ଆଶାରେ
ପ୍ରକାଶିବ ଛନ୍ଦ ତା'ର ପଲ୍ଲବିତ କୁସୁମ-ଭାଷାରେ
ଛନ୍ଦହୀନ ରମଣୀର ଅପ୍ରକାଶ ପ୍ରାଣ
ଅକାରଣ ଭରେ ମ୍ରିୟମାଣ ।

ନୁହେ ନୁହେ ଅକାରଣ ଅର୍ଦ୍ଧ ସ୍ଫୁଟ ଆହତ ମଞ୍ଜରୀ
ଅପ୍ରକାଶ ବାଣୀ ଯେତେ ମିଳାଇଛି, ହୋଇ ନାହିଁ ଧରି
ପ୍ରତି ଅଣୁ ପରମାଣୁ ନୋହେ ଅକାରଣ;
କୋଟି କୋଟି ଜୀବନ ମରଣ ।

ବକ୍ଷ ନେଇ ବିକାଶର ପଥେ ସଦା ଧାଇଁଛି ଏ ସୃଷ୍ଟି,
ତପତ ତଡ଼ାଗଜଳ ଫେରି ଆସେ ହୋଇ ଶୀତ ବୃଷ୍ଟି,
ଏ ବିରାଟ ବିଶ୍ୱେ କେବେ ନାହିଁ କାର କ୍ଷୟ,
ଚିର ଧନ ଝରଇ ଅକ୍ଷୟ ।

ମରଣ ଯାତନା ଜରା ବିୟୋଗ ବିଚ୍ଛେଦ ବ୍ୟଥା ବ୍ୟାଧି
ଜୀବନ ମିଳନ ସୁଖ ସ୍ନେହ ପ୍ରେମ ଯେ ଆନନ୍ଦ ଆଦି
ସୃଷ୍ଟି ବିକାଶର ପଥେ ପ୍ରୟୋଜନ ତୁଳ୍ୟ
ସମାନ ଯେ ସକଳର ମୂଲ୍ୟ ।

ନ ଲଗ୍ନ ଶିଶୁ ମୁଖେ ଆଲୋକର ଗୂଢ଼ ହାସରେଖା
ମୃତ୍ୟୁର ମଳିନ ଛବି ଅଧରକୋଣରେ ଦେଲେ ଦେଖା
ସ୍ଥିର ହେଲେ ଜୀବନର ସଧୀର ସ୍ପନ୍ଦନା
ଅଚଞ୍ଚଳ ତବଧ ଚେତନା ।

ମୁହୂର୍ତ୍ତକେ ଉଦେ ହୋଇ ମୁହୂର୍ତ୍ତକେ ପଡ଼ିଲେ ମଉଳ
ନବୋଦ୍‌ଗତ ଅଙ୍କୁରଟି ରବିକରେ ନଇଁଲେ ଝାଁଉଳ,
ଅକାରଣ ନୁହେ ତାର କ୍ଷଣିକ ବିକାଶ—
ଅକଳଙ୍କ ସୃଷ୍ଟିର ନିର୍ଯ୍ୟାସ ।

ଅନନ୍ତ ଜୀବନ ସ୍ରୋତେ ବହିଯାଏ ସୀମାହୀନ ଦେଶେ,
ଅସୀମ ଜୀବନ ଉର୍ଦ୍ଧ୍ୱେ ଛନ୍ଦ ତା'ର ମିଶେ ଅବଶେଷେ ।
ବିରାଟ ସେ ଚେତନାର ଉଦ୍ଦାମ ପ୍ଳାବନ
ବହି ଆଣେ ଅନନ୍ତ ଜୀବନ ।

ଜଳେ ସ୍ଥଳେ ଆକାଶରେ ବିନାଶର କୋଟି ରୂପ ଧରି
ବିପୁଳ ପ୍ରାଣ ପ୍ରବାହ ବିଶ୍ୱମୟ ରହିଅଛି ଭରି,
ଭୁବନର ପ୍ରତି ରନ୍ଧ୍ରେ ପ୍ରତି ଅବକାଶେ
ଜୀବନର ଚେତନା ବିଭାସେ ।

ମାନବ ନୟନେ ଯାହା ଶୂନ୍ୟ ବୋଲି ହୁଅଇ ପ୍ରତୀତ,
ସୂକ୍ଷ୍ମତମ ସେହି ଶୂନ୍ୟେ ପୂରି ଅଛି ଜୀବନର ଗୀତ,
କୋଟି ଚେତନାର ଅଣୁ ପରମାଣୁ ରସେ
ରୂପେ ରୂପେ ଏ ସୃଷ୍ଟି ବିଳସେ !

ଘୂର୍ଣ୍ଣାୟିତ ବିଶ୍ୱଚକ୍ରେ ଯେତେ ଲୟ ସ୍ଥିତି ବା ଜନମ
ବ୍ୟଥାର ଆନନ୍ଦ ରସେ ସଦା ତାର ପୀଡ଼ିତ ମରମ,
ଅନୁକ୍ଷଣ ବହି ଏହି ବ୍ୟଥାର ଆନନ୍ଦ
ଜାଗି ଉଠେ ସୃଜନର ଛନ୍ଦ ।

---

# ଜୀବନ

ମାନବ୍ ଜୀବନ ଲଭିଅଛୁ ଯେବେ ଦି'ଦିନ ପାଇଁ
ତେବେ କପାଁ କରୁ ନିରସ ବଦନ କହ ତ ଭାଇ !
ମରଣ ଆଗରୁ କି ଡର କହ ତ ମରିବା ଡରି
ଯେତେ ଦିନ ତୋର ଜୀବନ ସଜଡ଼ା ଯାଇନି ସରି ?
ମୁଖେ ଅଛି ହସ, ଆଖିରୁ ଚୋହର ଶୁଖିନି ପାଣି
ନରେଲାରେ ଯନ୍ଧ କର୍ଣ୍ଣ ବେଦନା ବାଜଇ ବାଣୀ ।
ଚରଣ ନୋହୁଛି ଶିଥିଳ ଅବଶ ହୋଇନି କର
ଲୋମର ପୁଲକ ନୟନର ତୃଷା ରହିଛି ତୋର ।
ଦୁଇ ଦିନ ହସି ଦୁଇ ଠୋପା ଲୁହ ପାରିଲେ ଢାଳ
କିବା ଦୁଖ ତାପ ଅଛି ତୋର ଆଜ କହ ତ ଭାଳ ?

ଯେ ଦିନ ନୟନୁଁ ଶୁଖିଯିବ ଲୁହ ନୀରବ କଥା
ସେଦିନ ଯିବ ଦୁଖ ସେଦିନ ଯିବ ତୋର ମରଣ ବ୍ୟଥା ।
ଭାଷା ଯେବେ ତୋର ଶୀତଳ ରକ୍ତିମ ବଦନେ ହାସ
କଳକଣ୍ଠେ ଆଶା, ଆଖିରେ ପୂରଇ ଲୋଚକ ପ୍ରାସ,
ଅଛି ତେବେ ସବୁ ଅଛି କାମଧେନୁ ଜୀବନ-ଗାଈ
ଜୀବନରୁ ବଳି କି ଲୋଡ଼ୁ ଅଧିକ କହ ତ ଭାବ ?



## ଏହି ଯେ ପାହାଡ଼

ଏହି ଯେ ପାହାଡ଼ ଆକାଶେ ଟେକିଛି ଶିର
ଯୋଗୀର ଧୂସର ଧ୍ୟାନ ସମାନ ଥିର !
ଉପହସି କେତେ ଝଞ୍ଜା ବତାସ ଗର୍ବ
କେତେ ବସନ୍ତେ ଟୁଟିନି ଧ୍ୟାନ ପର୍ବ !
କମ୍ପନହୀନ ବିପୁଳ ବକ୍ଷ ତଳେ
ଉପଘାତ ସମ ସବୁ ପଥିକିଏ ଝୁଲେ ।

ତଳେ ଉଭାହୋଇ କ୍ଲାନ୍ତ ପଥିକ ଏକ
ସୁପ୍ତ ନୟନେ ନିରେଖୁଛି ତା'ର ଟେକ
ନିରେଖୁଛି ଏହି ପଥ ହେବ ବୋଲି ପାର
ଅନ୍ତରମୟ ନିରାଶା ପୂରିଛି ଘର ।

ପାହାଡ଼ କଟିରେ ଉଡ଼ଇ ବହଗ ଦୁଇ
ନ ପାରଇ ତା'ର ତୁଙ୍ଗ ଶିଖର ଛୁଇଁ ।
ପ୍ରଶାନ୍ତି ଗଗନେ ବୁଲାଏ ପଥିକ ଆଖି
ଆଜ ବେଳ କେତେ ରହିଛି ତା'ପାଇଁ ବାକି ?
ମାନସେ ନାଚଇ ପାହାଡ଼ ସେପାଖ ଛବି
କେଉଁ ଘରବାଡ଼େ ହସୁଥିବ ଏହି ରବି !
କେଉଁ ଗ୍ରାମପଥେ କୁଟୀର ଆଠ କି ଦଶ
ଛାଡ଼ାଣିଆ ଖରା ହସୁଥିବ ଶେଷ ହସ ।

ହମା ରବ ଗୁଡ଼ ଛୁଆଙ୍କୁ ଆଗରେ ଗୁହିଁ
ଫେରୁଥିବ ପଲ ଗୋଠ୍ଁ ତାର କାଳୀଗାଈ !
କେଉଁ ରମଣୀର ନୟନ ତାହାର ପଥ
ଗୃହିଁ ଗୃହିଁ ପୁଣି ଫେରୁଥିବ ଅବିରତ,.
ପରିଚିତ କେଉଁ ରୂପ ସେ ଦେଖିବା ଲାଗି
କୋଳେ ଶିଶୁ ଧରି ଗୃହିଁଥିବ ଅନୁରାଗୀ,
ପାହାଡ଼ ଉପରେ ପରିଚିତ କିଛି ଗୁଇ
ଦେଖିବାକୁ ପଲ ରହିଥିବ ପଥ ଗୃହିଁ !

ଅସ୍ଫୁଟ କେଉଁ ଶିଶୁର ମଧୁର ବାଣୀ
ବାଜେ ପଥିକର ସବୁ ଇନ୍ଦ୍ରିୟ ଟାଣି
ଆସଇ ଚେତନା ଚମକ ଆଗକୁ ଧାଏଁ
ପାହାଡ଼ ପାଚେରି ଉଠିଛି ଆକାଶ ଯାଏଁ
ଲେଉଟେ ଆଉ ପାରି ହେଉଁ ଯିବା ପାଇଁ ଉଡ଼
ଦୂର ଗାଆଁ କୋଳେ ରବି ଯାଏ ଧୀରେ ବୁଡ଼ ।

'କାନ୍ଧ ସାହସ୍ ପୁଣି ବୁର ଖୋଜ ଉଠେ
ସଞ୍ଜ ଗଗନେ ଗୋଟି ଗୋଟି ତା'ରା ଫୁଟେ ।
କୋଟିଏ ବାସନା ମାନସ ଆକାଶେ ତା'ର
ରଚିଲେ ଅସୀମ ଅସ୍ଥାୟୀ ଅଭିସାର ।
ବନ କୋଳେ ଶୁଭେ ହିଂସ୍ର ପଶୁର ନାଦ
ଛୁଟିଲ ସାହସ, ଥକିଯାଏ ତା'ର ପାଦ
ପାହାଡ଼ ସେ ପାର୍ଶ୍ୱ କେତେ ସୁକୋମଳ ଗୀର
କାନେ ଆସେ ଅବା ନ ପାରେ ହୋଇ ସେ ଥିର,

କୁଟୀର ଦୁଆରେ ପର ଦିନ ପରଭାତେ
ସେହି ପାହାଡ଼କୁ ଚାହିଁ ପୁଣି ମନ ମାତେ ।
ଲଙ୍ଘିଲ କେତେ ଜୀବନେ ଏସନ ଗିରି
ଶତ ସଙ୍କଟ ଅନ୍ତର ଗଲା ଚିରି !
ଗତ ସନ୍ଧ୍ୟାର ସ୍ପନ୍ଦନ ପୁଣି ଲେଉଡ଼େ !
ଲଭିଥିଲା ଯାହା ପାହାଡ଼ ଉଠାଣି ମୋଡ଼େ !



## ରୂପ ଓ ବାଣୀ

ରୂପେ ରୂପେ ଆଜ ଫୁଟି ଉଠୁ ତବ ବାଣୀ
ଭୁବନ ଭରଣ୍ଟ ଭାଷାର ସିନ୍ଧୁ ଘୁଣି
ବାଣୀରେ ତୁମର ଫୁଟୁ ଅଭିନବ ରୂପ
ଜାଗ ଯୌବନ ଜାଳି ଜୀବନର ଧୂପ ।
ଜାଳି ଦେଇ ଜଗ ଜଡ଼ତା ତମସା ରାଜ
ରୂପର ଆଲୋକେ ଜାଗ ଯୌବନ ଆଜ !
ମରଣ ଯନ୍ତ୍ରେ ଦିଅ ହେ ଆଘାତ ହାଣି
ଛନ୍ଦେ ତାହାର ବାଜ ଉଠୁ ତବ ବାଣୀ ।

ପ୍ରଦୋଷ ଊଷାର ରଙ୍ଗମହଲ କୋଳେ
ରୂପାୟିତ ହୋଇ କେତେ ଋତୁ ମାସ ଚଳେ
ସପତ ରଙ୍ଗେ ରଞ୍ଜିତ କରି ଧରା
ସପତ ସ୍ୱରରେ ସଙ୍ଗୀତ ହେଉ ଭରା
କୁସୁମ କୋରକ କହୁ ଉଠୁ ସେହି କଥା
ଫଗୁଣ ସମୀରେ ବାଜୁ ଦୂର ଗୁଣ ବ୍ୟଥା
କୋଟିଏ ବର୍ଣ୍ଣ, ଗୋଟିଏ କଥାରେ ଜାଣି
ସତ୍ୟ ହେଉ ଏ ସଚେତନ ରୂପବାଣୀ ।

# ଭାରତ ଆସିବ ଫେରି

ଦୁନିଆ ଉପରେ ବଜାଇ ବିଜୟ ଭେରୀ
ଅନ୍ଧାର କୋଳୁଁ ଭାରତ ଆସିବ ଫେରି

ଆସିବ ଫେରି ସେ ନିଜ ଗଉରବେ
ଚକିତ ଧରାରେ ସ୍ତମ୍ଭିବେ ସରବେ

ବିଶ୍ୱ ସଭାରେ ଆଦରେ ତାହାକୁ ବସିବେ ସକଳେ ଘେରି
ଅନ୍ଧାର କୋଳୁଁ ଭାରତ ଆସିବ ଫେରି ।
ଫେରି ଆସିବ ରେ ପୁରାଣ ଭାରତ ମମ
ଉଠିବ ଘେନି ସେ ନବ ରୂପ ଅନୁପମ

## ମହାଦୀପ

ସବୁ କଳଙ୍କ ଦୂରେ ଯିବ ଖସି
ପୁରାତନ ମାଟି ଉଠିବ ରେ ହସି
ପରାଚୀର ଘାଲେ ଜଳୁଛି ଆଲୋକ, ନାହିଁ ନାହିଁ ଆଉ ଡର
ଅନ୍ଧାର କୋଳୁଁ ଭାରତ ଆସିବ ଫେରି ।

ହଜିଛି ଯେ ଦେଶ କେତେ କାଳୁ ନୋହେ କଳ
ସରିଛି ଶକତି ପଡ଼ିଛି ବିବେକ ଟଳ ।

ଆଜ ସେ ଭାରତ ପୁଣି ଟେକେ ମଥା
କଙ୍କାଳ ଗଣି କହୁଉଠେ କଥା
ଆଗ୍ନେୟ ଗିରି ସମ ତା'ର ବ୍ୟଥା ବିଶ୍ୱେ ଉଠଇ ଜଳି
ହଜିଛି ଯେ ଦେଶ ଯେଣୁ କେତେ ପ୍ରାଣ ବଳି !

ପାଇବାକୁ ଫେରି ଯୁଝିଲେ ଧରି ଯେ ଜିଦ
ତିଆଗିଲେ ତନୁ କେତେ ଅମୂଲ୍ୟ ନିଧି
ଅସ୍ତ୍ର ବିହୀନ ଶୂନ୍ୟ ହାତରେ
ପଠାଇଲେ ଗୁପ୍ତ ଯେହୁ ଅକାତରେ

ବତାଇଲେ ଆମେ ବନ୍ଦୀ କମାଣରେ ଟାଳିବୁଁ ପ୍ରାଚୀନ ବିଧି
ଢାଳିଦେଲେ ପ୍ରାଣ କେତେ ଅମୂଲ୍ୟ ନିଧି ।
କମାଣରୁ ବଳି ତଡ଼ାଇଲେ ଯେହୁ ଗୁଳି
ମତାଇଲେ ଏବେ ମରଣାପନ୍ନ ଜାତି
ଡାକିଲେ ଆସ ରେ ଆସ ମୋର ଦେଶ
ମୃତ୍ୟୁ ନୁହେ ତ ଜୀବନର ଶେଷ

## ମହାଦ୍ୱୀପ

ଜୀବନ ମରଣ ଲୁଚକାଳି ଖେଳ ଖେଳିବା ଆସ ରେ ସାଥି
ଡାକିଲେ ଉଠ ରେ ମରଣାପନ୍ନ ଜାତି !

ଅସ୍ତ୍ର ଶକତି ଅସ୍ଥିର ଚିରଦିନ
କେବେ ସେ ଅଧିକ କେବେ ହୁଏ ଅବା ହୀନ
ମନର ଶକତି ପଡ଼େ ନାହିଁ ଭାଜ
ସେହି ଶକତିରେ ବଳୀୟାନ ଆଜ
ସେହି ସମ୍ପଦେ ଦୁର୍ଜୟ ଆଶା ଲଭି ଆଜ ନୋହୁ ମ୍ଳାନ
ଅସ୍ତ୍ରର ବଳ ଅସ୍ଥିର ଚିରଦିନ ।

ସେ ଶକତି ଆମ ଆହବେ ଅଜେୟ ବେଶ
ଜୀବନ ପଣରେ ଫେରାଇ ଆଣିବୁଁ ଦେଶ
ଧନୀ ଦରିଦ୍ର ଯେତେ ଆପାମର
ଫେରାଇ ଆଣିବୁଁ ଭାରତ ଆମର
ନଭୁବା ଏ ହୀନ ପରାଣ କରିବୁଁ ଶେଷ
ଦେନୁହୁଁ ଶପଥ ଜୀବନ ପଣରେ ଫେରାଇ ଆଣିବୁଁ ଦେଶ ।

---

# ଜୟପୁର ଘାଟି

( ୧ )

ଯେତେ କଥା ଆଜ ହଜିଗଲା ମନ ଭିତରେ
ବନ୍ଧୁରଇଁ ସବୁ ଗାଇଯିବ ଖାଲି ଗୀତରେ

ହୁଡ଼ଗଲ କେତେ ଦେଖଲ ବାଟ ଘଣା
ରହିଗଲା ବନ୍ଧୁ ଅଲୁହା ଅଜଣା

ଚମକଲା ସ୍ମୃତି କେତେ ଯେ ବରଷା ଶୀତରେ
ବନ୍ଧୁରଇଁ ଆଜ ଗାଇଯିବ ସବୁ ଗୀତରେ ।

( ୨ )

ଭୁଲଗଲ କାହିଁ ବଣ-ପାହାଡ଼ର ଗୀଇତେ
ମନେନ୍ତ୍ରିପଡ଼େ କେତେ ଆଜ କେତେ ମନେ ନାହିଁ ଯେ

ଜୟପୁର ମାଳ ପାହାଡ଼ ପାଦେଶ
ରହୁଥିଲ ମୋର ତଳପାଶେ ବେଢ଼ି

ଦେଖି ସେ ଦୃଶ୍ୟ ରୂପ ଉଠିଥିଲ ଗାଇ ଯେ
ଭୁଲଗଲ ଏକେଁ ବଣ ପାହାଡ଼ର ଗୀଇତେ ।

( ୩ )

ଗିରିପରେ ପୁଣି ଉଠିଥିଲା ଗିରି ଲହରୀ
କଠିଣ ପଥରେ ମନ୍ଥର ଗତିରେ ପହଁରି

ତଳେ କାହିଁ ଧାଏଁ କୁଟିଳ ଝରଣା
ଗୁହିଁଲେ ଚକିତ ହୁଏ କଳପନା

ଗୁପ୍ତ ଶିର ଉହୁଁ ଗୀତ ଉଠିଥିଲା ମୋହର
ଗିରି ପରେ ଗିରି ତଥି ପରେ ଗିରି ଲହରୀ !

( ୪ )

ଜାଗିଥିଲା ତହିଁ ସହସା ମୋ କବି-ପାଗଳ
ପାଦପର ଶିର୍ଷ ନାଚଥିଲା ଅତି ଚପଳ

ସେଇ ପାହାଡ଼ର ଚୂଳେ ହୋଇ ଠିଆ—
ଡାକବାକୁ ମୋର ଲୋଡ଼ଥିଲା ହିଆ

ଜଗତ ଭିତରେ ଅଜୁହା ବାରତା ସକଳ
କୁହିଳ ପାଷ୍ଟରେ ଉଠିଥିଲା ହୋଇ ବିକଳ ।

( ୫ )

ସେହି ଗିରିକୋଳେ ଲଭିଲ ମନର ଦରଜ
ସେହି ଝରଣାରେ ଲୁଚଲ ରାଗିଣୀ ମୁରଜ

କେତେ ଜଳ ବନେ ରଙ୍ଗଗନ୍ଧ ଆଖି
ଛପୂଳ ଜୋଛନା ପରଶ ମୁଁ ରଖି

କେତେ ସକାଳେ ମୋ ଜଇଁଥିଲ ଶୁଭ୍ର ସୂରଯ
ସେହି ଧାଡ଼ି ପଥେ ଲୁଚଲ ରାଗିଣୀ ମୁରଜ ।

( ୬ )

କେତେ ରୂପ ରସ ସାଇତ ରଖଇଁ ଚିତରେ
ଗାଇଦେବା ପାଇଁ ସବୁ କଥା ଧନେ ଗୀତରେ

ଗାଇଦେବାପାଇଁ ଜୀବନ ଯାଚନା
ଅପାସୋର ସବୁ ସପନରଚନା

ମିଛ ଦୁନିଆରେ କହିବାକୁ ପଦେ ସତରେ
ମୁଁ ଦେବା ପାଇଁ ତୋଳା ଦୁଇ ଶେଷେ ଗୀତରେ ।

## ଶତାବ୍ଦୀ-ସୈନିକ

ସିକ୍ତ କର ରକ୍ତ ମାଟି    ରକ୍ତ ଊର୍ମି ଉଠଇ ଉଜାଣି
ଚଳଇ ଧରଣୀ ପରେ ମରଣ-ନିର୍ଭୀକ
ଦୃପ୍ତପଦେ ଦୁନିଆର    ଅନ୍ତନାଡ଼ ଦଳେ ଦୃଢ଼େ ଟାଣି
ନାଶ ଉଠେ ଶତାବ୍ଦିର ଶୋଣିତ ସୈନିକ ।

ଊର୍ଦ୍ଧ୍ୱରେ କମ୍ବଳ ଧ୍ୱଂସ    ଉଠେ ଗର୍ଜି ଅନ୍ଧକାର ଅମା
ବିଶ୍ୱଗ୍ରାସୀ କ୍ଷୁଧାମୁଖେ ଧାବଇ ରାକ୍ଷସ
ଚକ୍ଷୁରୁ ଛୁଟଇ ତା'ର    ଶତ କୋଟି ଆଣବିକ ବୋମା
ଚଳେ ତମ୍ଭୂ ନବ ଶତାବ୍ଦିର ଅବତଂସ ।

ଜାପାନ, ଚ୍ଏନା, ବ୍ରହ୍ମ, ଭାରତ, ପାରସ୍ୟ ଆଫଗାନ,
ଆରବ, ତୁର୍କି, ଆଫ୍ରିକା, ରୁଷିଆ, ୟୁରୋପ,
ଅଷ୍ଟ୍ରେଲିଆ, ଆମେରିକା ମହାଦେଶେ ଉଡ଼ଇ ନଶାଣ
କୁମେରୁ ସୁମେରୁ ବେଢ଼ି ଉଠେ ଭୂମିକମ୍ପ ।

ଧବଳ ହରତ କୃଷ୍ଣ ବହୁ ବର୍ଣ୍ଣ ଚର୍ମ ବେଶବାସ
ବୌଦ୍ଧ ହିନ୍ଦୁ ମୁସଲ୍‌ମ ନ ଶିଖ ବା ଖ୍ରୀଷ୍ଟାନ
ସଂଗ୍ରାମ ମାଗଇ ନମ୍ର ବଦଳତ ଧୂଳତଳ ଘାସ
ଶତେକ ଶତାବ୍ଦିପରେ ଉଠେ ଅଭିଯାନ ।

ଅବିଚ୍ଛିନ୍ନ ସୈନ୍ୟଶ୍ରେଣୀ ପାତାଳୁଁ ଉଠାଏ ଜୟସ୍ୱର
ଆକାଶ ମଥିତ କରେ ବିପ୍ଳବର ଡାକ
ସହସ୍ର ଭାଷାରେ ଲେଖେ ଏକ ପତ୍ରେ ଚରମ ସ୍ୱାକ୍ଷର
ଅଘଟ-ଘଟନା ପଟୁ ନବୀନ ଶତାବ୍ଦି ।

———

# ଜାଗ ଜାଗ ଗାନ୍ଧି !

ନଗ୍ନାଙ୍ଗ, ତୁଷାରବୃତ ଅଚଞ୍ଚଳ ଶୀତଳ ଅଟଳ
ଉପଶମ କରେ ଯେଉଁ ବିଶ୍ୱର ବିରାଟ କାଳାନଳ
ହିମାଳୟ ଶୃଙ୍ଗ ସମ ଊର୍ଦ୍ଧ୍ୱେ ଅସୀମ ମହିମା
ଉଚ୍ଚ ତୁମେ ଏଥି ତଥା ଉଚ୍ଚତାର ଶେଷ ସୀମା ।

ଉଚ୍ଚ ହେଲ ହେ ମାନବ ! ଉଚ୍ଚତମ ଗିରିରୂପେ ଆଜ
ମୌସୁମୀ ସମାନ କର୍ଣ୍ଣ ଶତ ଯୁକ୍ତି ଲେଉଟଇ ବାଜ ।
କେତେ ବଜ୍ର କେତେ ଝଞ୍ଜା ଅଙ୍ଗେ ତବ କରନ୍ତି ନିନାଦ
ଜଳ ହୋଇ ଫେରିଅଛି କେତେ ତର୍କ କେତେ ପ୍ରତିବାଦ ।

ପ୍ରାସାଦ-କୁଟୀର ଭେଦ ମମତାର ବନ୍ଧନରେ ବାନ୍ଧି
ସକଳ ସଂଘର୍ଷ ପରେ ଶାନ୍ତି ଛାଳ ଜାଗ ଜାଗ ଗାନ୍ଧି !
ଜାଗ ଜାଗ ଯୁଗେ ଯୁଗେ କହି ତବ କଲ୍ୟାଣ ବାରତା—
ଲଭିପାରେ ଶାନ୍ତି ଧରା ନ ଗଢ଼ାଇ ପୁଞ୍ଜିପତି ମଥା ।

ଶକ୍ତର ସେବା ସୁଦ୍ଧା ଶୁଣିପାରେ ସୁକ୍ତର ବାଣୀ
ବଦଳାଇ ପାରେ ହୃଦ ମଥା ତାର ଲେଡ଼ା ନାହିଁ ହାଣି
ମାଲିକ ଶ୍ରମିକ ପ୍ରଜା ନିଷ୍ପେଷିତ ଜନ ଧନବାନ
ବିନା ରକ୍ତେ ସମ୍ଭବଇ ସକଳ ଭେଦର ଅବସାନ !

କହ କହ ଆଜ ଥରେ ଶୁଣିବାକୁ ଉତ୍କଣ୍ଠା ଧରଣୀ
ଜ୍ୱଳନ୍ତ ତା' କ୍ଷତ ପରେ ଲଗ ତବ ବିଶଲ୍ୟକରଣୀ
ଶୁଣାଅ ଶୁଣାଅ ପୁଣି କିଏ ମିଥ୍ୟା କିଏ ପଥଭ୍ରାନ୍ତ
ହେ ଅଟଳ ସତ୍ୟସନ୍ଧ ! ହେ କଠୋର ସାଧକ ଅଶାନ୍ତ ।

ଜଡ଼ତାର ଅବସାଦ ଚୂ'ଣର ପ୍ରେରଣାଦାତେ ସୃଷ୍ଟି
ଖରତର ପଥେ ଦ୍ରୁତେ ଚଳ ଆହେ ବେଗବାନ ଦୃଷ୍ଟି
ଭୂମର ବଗ୍ରହେ ଶତ ଶତ ଚିର ସଞ୍ଚିତ ବିଦ୍ୟୁତ
ଚମକାଇ ଦେଇ ବିଶ୍ୱ ପୁଣି ଥରେ ହୋଇ କକ୍ଷଚ୍ୟୁତ ।

ହେଲେହେଁ ପ୍ରାଚୀନତମ ତବ ସତ୍ୟ ହେଉ ପଛେ ଜୀର୍ଣ୍ଣ
ଆଣିଛୁ ସେ ଭୂମିକମ୍ପ ଧରଣୀକୁ କରିଛୁ ବିଦୀର୍ଣ୍ଣ
ଭାରତ ଗଗନ ପରେ ଶୁଭେ ସେହି ଅନାହତ ଧ୍ୱନି
ଶ୍ମଶାନର ଶବ କାନେ ଫୁଙ୍କିଦେଇ ମୃତ୍ୟୁ ସଞ୍ଜୀବନୀ ।

ସେହି ମନ୍ତ୍ରେ ପ୍ରକମ୍ପିତ ସ୍ପନ୍ଦନବିହୀନ କେତେ ଶ୍ରାନ୍ତ
ଚମକିବ ଅକସ୍ମାତ ଘୋଷି ଉଠି ଜାଗ ! ଜାଗ ! ଜାଗ !
ମୂକ ମାନବର ମୁଖୁଁ ମୁଖରିତ ହେଉ ପୁଣି ଭାଷା
ଦଳିତର ପୀଡ଼ିତର ଚେତନ ଦିଅ ଜ୍ୱଳନ୍ତ ପିପାସା ।

କ୍ଷୁଧିତଙ୍କୁ ଶିଖାଅ ହେ ତ୍ୟାଗୀ ଛାର ଲୁହେ ଅନାହାର
ଯେପରି ନେଇଛ କାଢ଼ି ଜନ୍ମଗତ ସ୍ୱତ୍ୱ ଅଧିକାର ।
ବସ୍ତ୍ରହୀନେ ବତାଅ ହେ ନିଜ ହାତେ ନିର୍ମିବାକୁ ବସ୍ତ୍ର
ନିରସ୍ତ୍ରଙ୍କୁ ଦିଅ ଆଣି ଅଦଭୁତ ଅହିଂସାର ଅସ୍ତ୍ର ।

ମରଣର ପଥ ଝୁଣ୍ଟି ବସିରହେ ଯେତେ ଅସହାୟ
ଉଠୁ ସେ ସାହସଭରେ ପାଇବାକୁ ଫେର ନିଜ ନ୍ୟାୟ
ଶ୍ରେଷ୍ଠତମ ମର୍ଯ୍ୟାଦା ହେ ଭାରତର ଗର୍ବ ଅଭିମାନ
ସକଳ ସମସ୍ୟା ଲାଗି ଦିଅ ଆଣି ନବ ସମାଧାନ ।

ଉଚାରିଲ ଯେଉଁ ମନ୍ତ୍ର ଉଠେ ତୋଳି କୋଟି ଅଭିଳାଷ
ଠୁଳ ହେଲ ତୁମ ଚହୁଁ ସହସ୍ର ବର୍ଷର ଇତିହାସ
ସେହି ମନ୍ତ୍ର ଜଗତରେ ଆଣିବ କଲ୍ୟାଣ ସ୍ରୋତ ବନ୍ୟା
ନେତା ତୁମେ ଯୁଗେ ଯୁଗେ ଜାଗ ଜାଗ ଆହେ ସତ୍ୟାଗ୍ରହୀ !

— — —

## ରକ୍ତ-ସ୍ରୋତ

[(ଗାନ୍ଧିଜୀଙ୍କ ହତ୍ୟା ଉପଲକ୍ଷରେ)

କେଉଁଠି ଝରିଲା ରକତ ସୁଅ ! କୁହରେ କୁହ !
କେଉଁ ମାଟିତଳ କଲା ସେ ଭେଦା,
ନିର୍ମମ ଜାତି ! ପୋଛରେ ଲୁହ ।

ଲୁଚିଗଲା କମ୍ପା ଧରଣୀ ଉଦରୁ କାହାର ମୂର୍ତ୍ତି
ନିର୍ବାକ୍ ଆରେ ମାରବତା ଏଡ଼ ବଚନ କୁହ !
କେଉଁ ମାଟିତଳ ଶୁଖିଲା ବାଲି ଶୋଷିଲା ଗୁଲି
କେଉଁ ପାଷାଣ ସେ ରକତ ଲୋତକ ଦେବାକୁ ନାଲି ।
କେଉଁଠାରୁ ଆଜ ନ ଚଳିଲା ପାଦ ରହିଲା ସ୍ଥିର
ହେ ମୋର ଦେଶର ପରମ ଯୋଦ୍ଧା ଯୁଧିଷ୍ଠିର !

× × × ×

ତୋଳରେ ସେ ମାଟି ମାଆର ତିଳକ ଲଗାଅ ପଲେ
ଦେଖ ଦେଖ ଆଜ କାହାର ରୁଧିର ପଡ଼ିଲା ତଳେ ।
ପିଶାଚୀ ବସୁଧା କାହା ଲହୁ ଆଜ ପିଇଲା ବାନ୍ଧୁ
ଗୁଣେ ଖର ଶୋଷ ନବୀନ ଯୁଗର ସର୍ବସଂଚୀ ।
"ଯୁଷ୍ମାସୁ କୃତନିଷ୍ଠସ୍ୟ, ଶୁଣ ଡାକ କେ ଦଏ
ପ୍ରାଚୀନ ଗ୍ରନ୍ଥି ଛୁଡ଼ିଗଲା ଏବେ ବପ୍ଳବୀ ହେ !"
ବିଶ୍ୱ ବିରାଟ ବକ୍ଷଥଳରେ ବାଜିଲା ଗୁଳି
ଖସିଲା ଉଲ୍‌କା ଜଳଜଠେ ମହା ଶତାର ଚୁଲି ।
ହିଂସାବହ୍ନିର ଶାନ୍ତ ଉପରେ ପଡ଼ିଲା ଦାଗ
ଦିଗେ ଦିଗେ ଆଜ ଚମକ ଉଠିଲା ରକ୍ତରାଗ !

× × × ×

ସମାନ ହେବାକୁ ସମାଜ ଏଣିକ ସହଜ ହେଲା
ରୁଧିରେ ହୋଲିର ହାତ ସେତୁ ଆସ ହିନ୍ଦୁ ଚେଲା !
ଆସ ଭାରତର ପ୍ରାଚୀନପନ୍ଥୀ ଧର୍ମଧ୍ୱଜୀ
ଧର୍ମ ତୁମର ବହ୍ନି ଧୂଳିରେ ଗଲାଣି ହଜି ।
ଯେଉଁ ଧୂଳି ପରେ ଲୋଟାଇଲା ଦେହ ଅହିଂସାର
ଭାରତ ବକ୍ଷେ ଝରାଇଲା ଶର ରକ୍ତଧାର
ସେ ରୁଧିର ଆଜି ବେଧିବକୁ କା'ର ଶକତି କୁହ
ଆରେ ନିର୍ଲଜ୍ଜ ନିର୍ମମ ଜାତ, ପୋଛରେ ଲୁହ ।

---

# ଶୂନ୍ୟ ଚିନ୍ତ

ହେ ଶୂନ୍ୟ ହେ ମହା ଶୂନ୍ୟ !
ଆବରି ବିରାଟ ଏକ ବିଶ୍ୱ
କୋଟି ଗ୍ରହ ଉପଗ୍ରହ
ଖେଳାଉଛ ଯେହ୍ନ ଦଶଦିଶ ।
ଅଗଣନ ଜୀବ ତହିଁ
ରେଣୁ ସମ ହୁଏ ଉଦେ ଲୀନ,
ଅସଂଖ୍ୟ ବନ୍ଧନ ଲଭେ
ଦୁଃଖ ସମ ଶତଧା ବିଦୀର୍ଣ୍ଣ
ଚିନ୍ତାହୀନ ଶୋକଶୂନ୍ୟ
ସୁଖ ସୌଭାଗ୍ୟର କୋଲାହଳ,
କାହିଁ ଲୁଚେ ଅନ୍ଧକାରେ
କାହିଁ ହୁଏ ଆଲୋକେ ଉଜ୍ଜ୍ୱଳ ।

ଶତ କୋଟି ବର୍ଷ ନୀଡ଼େ
ଅହରହ ଲୋମକୂପେ ତବ
ବସ୍ତୁତ ନୂହଇ ସୃଷ୍ଟି
କଳ୍ପନା-ପ୍ରଣୀତ ଅବୟବ !

ଚିନ୍ତାର ବାହାରେ ତବ
ସତ୍ୟ-ରୂପ ଜନମାଏ ଭ୍ରମ,
କ୍ଷୁଦ୍ରତମ ସଙ୍ଗେ ସିନ୍ଧୁ
ସମାନ ହୋଇଛି ଦୃଢ଼ତମ ।

ସଂଖ୍ୟାର ଚରମ ତୁମେ
ଗଣକର ଗଣନାର ଶେଷ,
ଅଙ୍କର ଆଦିମ ଶୂନ୍ୟ
ଆଦିମୂଳ ବିଶ୍ୱର ବିଶେଷ ।

ପରମାଣୁ ସମ ମୁହିଁ
ପାଇଛି ଯେତିକ ଅଧିକାର
ତବ ଅଙ୍ଗେ, ମୋର କୋଳ୍
ଯେଉଁ ସ୍ଥାନ ଅଛି କହିବାର ।

ଅସୀମ କାଳର ସ୍ରୋତେ
ମୋ ଜୀବନ-କାଳ ଯେତେ ସାନ
ହେଉ ପଛେ କ୍ଷୀଣତମ
କ୍ଷୁଦ୍ରତମ ବୁଦ୍‌ବୁଦ ସମାନ ।

କ୍ଷୁଦ୍ରତାର ଶୂନ୍ୟତାର
ବାଧା କାଟି ପୁଣି ସମସ୍ତର
ଲେଖିଯିବ କାଳବକ୍ଷେ
ମୋର ଏକ ଜୀବନ୍ତ ସ୍ୱାକ୍ଷର ।

ଯେଉଁ ଶୂନ୍ୟତାକୁ ଭେଦ
କରିବାରେ ନ ପାରିଲ ପକ୍ଷୀ
କରିବ ଉଜ୍ଜ୍ୱଳ ତାହା ପରେ
ସଦା ସ୍ଥିର ମୋର ମସୀ ।

ଲୁହାର କପାଟ ସମ
କାଟି ଦେଇ ବିଶ୍ୱର ବିଷାଦ
ଜଣାଇବ ଆଜ ବୋଟି
ଶତାବ୍ଦି ସଞ୍ଚିତ ପ୍ରତିବାଦ ।

ନଗ୍ନକାର କୋଳେ ମୋର
ଯାକାର ଜୀବନ ଯିବ ରଚି,
ତାହାଁ ମଧ୍ୟେ ଚୀତ୍କାରିବ
ଅଛି ସବୁ ଅଛି ! ଅଛି ! ଅଛି !

———

## ଜାଗ୍ରତ ଆଘାତ

ଆଗାମୀ ଜୀବନ ପାଇଁ ତେଜ ଦିଏଁ
ଆଜର ସକଳ ସୁଖ,
କାଲର ମୁଖର ଭାଷା ପାଇଁ ଆଜ
ଶିଶୁ ସମ ରହେଁ ମୂକ ।

ବେଦନା-ତିମିର-ସ୍ତରେ ନିରେଖିବା
ଲଗି ସୁଖମୟ ଶିଶ
ଚେତନା-ଟଂକାର ଶୁଣି ରହୁ ଚିର
ଜାଗ୍ରତ-ରସେ ରସି ।

ମଧ୍ୟାହ୍ନ କୋଳେ ଜଳ ଉଠେ ଯେବେ
ତୃଷାର-ହୁତାଶ-ଶିଖା,
ତପତ ଆଖିରେ ନାଚ ଉଠୁ ଦୂରେ
ତୃପ୍ତିର ମରୀଚିକା ।

ମଳିନ ଗୋଧୂଳି-ଲଗନେ ଉଦାସ
ମାନସ ନ ହେଉ ମ୍ଳାନ
ପର ଦିନ ଉଷା-ପଥେ ସ୍ୱର୍ଣ୍ଣ ରଶ୍ମି
ଆଣିବ ଜାଗର ଜାଳ ।

ସ୍ୱର୍ଣ୍ଣ ରଶ୍ମି ଶର ସକଳ ବାସର
ସବୁ ଅଭିସାର-ଗନ୍ଧ
ଉଷା ପରଦୋଷ ଆଲୋକ ତାମସେ
ରଚ ବେଦନାର ରଚି ।

ଆଜର କଠିଣ ଆଘାତ ପରଶେ
ବଜ ୧
ପ୍ରିତ ନିମେଷର ସୁଖ-ପରଶନେ
ଦେଖାଦେଉ ବିପରୀତ ।

ଦ୍ରୁତ ନିମେଷରେ ବାଜଉଠୁ ଯେତେ
ଅନ୍ତରର କ୍ଷତ ବାଣୀ
ଜାଗିଉଠୁ ଶତ ଅକରୁଣ ବ୍ୟଥା
ଗଭୀର ଆଘାତ ହାଣି ।

ବିସ୍ମୃତି ତଳେ ବୁଡ଼ିବାକୁ ଭୟେ
ଲୋଡ଼େ ଯେବେ ଶାନ୍ତ ମନ,
ବ୍ୟର୍ଥତା ଦେଉ ଚେତନା ପରଶ
ଆଣୁ ନବ ଜାଗରଣ ।

ଦୁଃଖ ଯାତନା ନ ହେଉ ପ୍ରତୀକ
ଭୁଟାଉ ମୋହର ପ୍ରାଣ
ଦୃଷ୍ଟିକୁ କରୁ ଆବରଣହୀନ
ଦର୍ଶନ ପରକାଶ ।

ଜାଗ୍ରତ ସେହି ଦୃଷ୍ଟି ବଳେକୁ
ମେରୁ ସମ ବଫଳତା
ବାସନା ବକାରେ ଯମି ହଟେ ଯେତେ
ମାନସର ପ୍ରବଳତା ।

ଯମି ହଟେ ଯେତେ ଆଖିର ବାଷ୍ପ
ଆଷାଢ଼ ଆକାଶ ସମ
ଜୀବନର ପରିଭବ ପଡେ ଯେତେ

ସପନେ ଭୁଲିବା ପାଇଁ ଖୋଜୁ ମନ
ଛଳନାର ଆବରଣ
ଖୋଜେ ଯେବେ, ତହିଁ ବାଜ ଉଠୁ ସଦା
ଆତ୍ମାର ଜାଗରଣ ।

# ଭୁମେଟି ଗୃକବା ଜାଣ

ଦୁନିଆ ଭିତରେ ଭୁମେଟି ଗୃଲବା ଜାଣ
ସେ ଯେଉଁ ଆଘାତେ ଥରୁ ଉଠେ ତବ ପ୍ରାଣ;
ବାଜେ ନାହିଁ ସେ ତ ପଶୁ ପକ୍ଷୀ ତରୁପରେ
ବାଜ ଉଠେ ଯାହା ମଣିଷ କୁଡ଼ିଆ ଘରେ ।

ଦୁନିଆ ବୁକୁରେ ଜାଳଦେଇ ହୁତାଶନ
ସେଦ୍ବ ସେ ଆଘାତ ବାଜ ଉଠେ ଘନ ଘନ
ସେଦ୍ବ ସେ ଆଘାତ ବାଜଇ ଜନନୀ ବୁକେ
ଗୃହିଁ ଅନାହାର—ପୀଡ଼ିତ ତନୟ ମୁଖେ ।
ସେଦ୍ବ ସେ ଆଘାତ ତତାଇ ଦିଅଇ ଲହୁ,
'ଏକ' ଯେଉଁଠାରେ ମିଳାଇ ହୋଇଛି 'ବହୁ' ।
ଗୃଲିଅଛି ବେଗେ ନମାନ ଆଘାତ ବାଣୀ
ଦୁନିଆ ଭିତରେ ଭୁମେଟି ଗୃଲବା ଜାଣ ।

(ଉତ୍କଳମଣି ଗୋପବନ୍ଧୁଙ୍କ ଶ୍ରାଦ୍ଧ ବାସର ଉପଲକ୍ଷରେ ରଚିତ)

## ମହାଘାତ

ମରମେ ବାଜନ୍ତୁ ଜଗତଯାକର ବ୍ୟଥା,
ଫାଶୀକାଠ ପାଖେ ସିଧା ରଖିଅଛ ମଥା ।
ନଇଁବା କେମନ୍ତ କେବେ ତ ଶିଖିଲ ନାହିଁ,
ଜାଣିଲ ନାହିଁ ତ ପଛକୁ କେସନ ଚାହିଁ,
ନ ଛୁଟିଲ କିଆଁ ମଣିଷ ହୃଦର ପ୍ରୀତ
ରହିଲ ଅନୁଆଁ ଆମରଣ ଅବନତ ।
ମଣିଷ ନ ମାରି ଜୀଇଁପାରେ ଏଥି ନର
ସେହି କଥା ତୁମେ କହିଲ ଥରକୁ ଥର ।
କହିଲ, "ଜାଗ ରେ ସକଳ ଆହତ ହତ
"ଜାଗି ଉଠ ଆରେ ଏ ଭବର ଭବିଷ୍ୟତ ।"
ଘନବେଶ ଦେହ ଦୁଇ ହାତ କରି ଖାଲି
ଦୁନିଆ ଭିତରେ ତୁମେଟି ଜାଣିଲ ଚାଲି !

---

## ଜଡ଼-ଦର୍ଶନ

ମରଣ ଆସଇ ଲୁଚି ଚରଣ ଚଳାଇ ଧୀରେ
ଫୁଙ୍କିଯାଏ ଜୀବନର ଦୀପ
ନ ଦେଖାଇ ରୂପ ତା'ର ନ ଜଣାଇ ଆଗମନ
ନ ଶୁଣାଇ କାହିଁ ପାଦଟିପ !
ଜଳଉଠେ ବିଶ୍ୱକୋଡ଼େ ପୁଣି କାହିଁ ଜୀବନର
ନବ ନବ କେତେ ଦୀପାବଳି,
ରଜନୀ ଦିବସ ସମ ଜୀବନ ମରଣ ଖେଳ
ସହଜରେ ଯାଏ ସେ ଯେ ଚଳି ।

କି ଉଦ୍ଦେଶ୍ୟ ଏ ସୃଷ୍ଟିର କି ସନ୍ଦେଶ କିବା ତାର ବାଣୀ
କି ଅମୂଲ୍ୟ ନିଧି ଭୁଲେ ଅବିଶ୍ରମ ଧାଇଁ ବୁଲେ ପ୍ରାଣୀ ।
ଲଭେ କିବା ଆସି ଏଥି କି ହଜାଏ, ସେ ହିସାବ କାହିଁ ?
ଦେଖିବା ଶୁଣିବା ଯେତେ ରହେ ବାକି, ଅନ୍ତ ତାର ନାହିଁ ।

## ମହାପାପ

ଅବୋଧ ଜୀବନ ପଥେ ସମଦୁଃଖୀ ସାଥି ଅଗଣିତ,
ନାହିଁ ରୂପ ନାହିଁ ଚିହ୍ନ ! ସବୁ ଆଜ ପାସୋରିବା ଗୀତ ।

ବେଳାର ବାଲୁକା ସମ ଜ୍ଞାନରେଣୁ ଯାଏ ଷଣେ ଉଡ଼ି
ପଡ଼ରହେ ବାକ ସବୁ ଚିରନ୍ତନ ଜଡ଼ତା ଜାବୁଡ଼ି ।
ଯେତେ ରୂପ ଅବୟବ ସବୁଠାରୁ ଦଣେ ହୋଇ ବଡ଼
ରୂପାନ୍ତର ଯେନ କେତେ ହୋଇଛି ସେ ଜଡ଼ ଖାଲି ଜଡ଼ !
ଯାଇଛି ମିଳାଇ କାହିଁ ଜଳେ ଥଳେ ଆକାଶେ ଆଲୋକେ
କେବେ ସୁଖେ ହସି ଏଥି ଲୁହ ଢାଳ କେବେ ମହା ଶୋକେ !
ରୂଲଥାଏ ସାଥିମାନେ ଜୀବନର ଉଡ଼ତ ପ୍ରବାହ,
ଯାଏ ନଇ କାହିଁ ପୁଣି ମଧ୍ୟାହ୍ନର ତୀବ୍ର ବହ୍ନିଦାହ;
ବଦାୟୁ ଯେନଇ ଶିଶୁ ଜନନୀର କୋଡ଼ୁଁ ହୋଇ ଛିନ୍ନ
ଯାଏ ରଖି ଧରାପରେ ସୁକୋମଳ ତାର ପଦଚିହ୍ନ ।
ଅଗଣିତ ପଦଚିହ୍ନ ବକ୍ଷେ ଧରି ଯେ କରେ ବିହାର
ଜଡ଼ ରୂପା ହେ ଧରଣି ! ଯେନ ଏ ଜୀବର ନମସ୍କାର ।

ସମୟର ସୀମା ବାନ୍ଧି, ଶତକୋଟି ଗ୍ରହ ଉପଗ୍ରହ
ଖେଳାଉଛ କୋଟି ବିଶ୍ୱ ଲୋମକୂପେ ଯେହୁ ଅହରହ
ଉପହାସେ କର ଯେହୁ ମାନବର କ୍ଷୁଦ୍ର ଆବିଷ୍କାର
ଜଡ଼ରୂପୀ ହେ ଆକାଶ ଯେନା କର ମୋର ନମସ୍କାର ।

### ମହାଘାତ

କୋଟି ଚନ୍ଦ୍ର ଗ୍ରହ  ତାର ଜଳ ଉଠେ ଯେ ଆଲୋକ ଲାଗି
ଘନ ତମିସ୍ରାର କୋଳେ ଯେ ଆଲୋକଧାର ଉଠେ ଜାଗି
ଜଳେ ପୁଣି ସିନ୍ଧୁ ବକ୍ଷେ ଗିରି ଚୂଳେ କାଳାନଳ ସମ !
ଜଡ଼ରୂପୀ ହେ ଅନଳ ଅଗ୍ନି ତବ ପଦେ ନମୋନମ !

ଯୁଗ ଯୁଗ ଧରି ଗଢ଼ା ସଭ୍ୟତାର ପ୍ରାସାଦ ମହତ
ମୁହୂର୍ତ୍ତେ ପାର ଯେ କରି ରେଣୁ ସଙ୍ଗେ ସବୁ ପରିଣତ ।
ଧ୍ୱଂସର ଦୁନ୍ଦୁଭି ବାଇ କବଳିତ କରି କୋଟି ପ୍ରାଣ
ଝଞ୍ଜା ଯୁଦ୍ଧ ଭୂମିକମ୍ପରୂପେ କରି ଜିହ୍ୱା ଲେଲିହାନ ।
ହେ ଜଳ ପବନ ଅଗ୍ନି ମୃତ୍ତିକା ଆକାଶ ମହାଭୂତ
ଯାହା ଦେଇ ଧରେଁ ପ୍ରାଣ ଯାହା ଗୁଡ଼ି ଶେଷେ ହୁଏଁ ମୃତ,
ତୁମେ ମୋର ଆଦିଅନ୍ତ ତୁମେ ମୋର ସବୁ ସାନ ବଡ଼
ତୁମେ ସତ୍ୟ ସନାତନ ଜ୍ଞାନରୂପୀ ଜଡ଼ ଆହେ ଜଡ଼ !

---

## ଅଗଣିତ ଆଗୁଆନ

ସଂଗ୍ରାମ ନଶା ପିଇ
ସର୍ବହବର ସୈନିକ ଆଜ ମାଟିରୁ ଉଠଇ ଜାଇଁ
ଶୋଷକ ଭିତରେ ସବୁଛି ଲଢ଼େଇ
ଆହର ରହିଛି ବାକ
ଶୋଷିତ ଉଠିଛି ଡାକ !
ସବୁଠାରୁ ବଡ଼ ସେଇ ଲଢ଼େଇର ଡାକ
ଜାପାନ ଗୃଏନା ଇୟୁରୋପ ଦେଶ ଉଠିଛି ଦୁନଆସାକ ?
ଧନଶାଳୀ ଆମେରିକା
ସେ ଡାକେ ପଡ଼ୁଛି ଫିକା ।
ପୃଥିବୀ—ଗ୍ରହର କୂହାଟ ଉଠଇ
ସୌର ଜଗତ ମଥି
ସବୁଠାରୁ ବଡ଼ ଫଉଜ ହୋଇଛି ରଥୀ !
ଆଣବିକ ବୋମାଠାରୁ ବଳ ବଳୟାନ
ପଦନକ୍ଷେପେ ପାହାଡ଼ ଲସଇ
ଅଗଣିତ ଆଗୁଆନ !

ସ୍ୱଦେଶ ବିଦେଶ ସୀମାରେଖା ନାହିଁ ମାନେ
ଚାଲିଛି ଚମକ କି ଭୀଷଣ ଅଭିଯାନେ !
ସବୁ ଜାତି ରୂପ ସବୁ ନରନାରୀ ଏକ
ସବୁ ଭାଷାଭାଷୀ ଗାଉଛି କେବଳ
ମଣିଷ ଜାତିର ଟେକ ।
ଲକ୍ଷ ଯୋଜନ-ବ୍ୟାପୀ
ଅଖଣ୍ଡ ଆଟ ଚଳେ ଅବିଶ୍ରାମ ଦିଗ୍‌ବଳୟକୁ ମାପି
ଉଠେ ସାମଗାନ ଗୁରୁଗମ୍ଭୀର
ଭୁଟେ ମସ୍‌ଜିଦ୍‌, ଭୁଟେ ମନ୍ଦିର
ଆକାଶ ଫଟାଇ
ଫୁଟେ ଆଗ୍ନେୟ ବାଣ
ପଦବିକ୍ଷେପେ ଧରଣୀ ଥରାଏ ଅଗଣିତ ଆଗୁଆନ ।

# ଆଶ୍ୱାସନା

ଭୁବନ ଭରି ଆଜ ପ୍ରେୟସୀ ମୋର ଚଳେ
ଭୁବନ ଭରି ସେ ଗୋ କାନ୍ଦେ ମୋ ବିରହରେ
ନୀଳ ଅଞ୍ଚଳେ ତାର ଖେଳେ ଆଲୋକ ଛାୟା
ଆବରି ଦଣ୍ଡଦଣି ଦେଖାଏ ରୂପମାୟା ।
ରୂପସି ଉଠ ହସି
କେଉଁ ଗଗନେ ବସି

ଦେଖାଅ ରୂପମାୟା
ଏଯେ ଆଲୋକ ଛାୟା ।
ଚଖାଇ ଯାଏ ସେ ଗୋ ତୃପ୍ତି-ହୀନ ଆଶା, !
ରଖାଇ ଯାଏ ପ୍ରାଣେ ପ୍ରକାଶ-ହୀନ ଭାଷା,
ମରମେ ରହେ ମରି
ସଦା ଯେ ମରମରି

ତୃପ୍ତିହୀନ ଆଶା
ପ୍ରକାଶହୀନ ଭାଷା ।

ବଦନ ଲୁଚେ ତବ ନଶାର ଅନ୍ଧକାରେ
ଅନ୍ତର କାନ୍ଦେ ମୋର ନଗ୍ନ ହାହାକାରେ
ଯାଏଁ ମୁଁ ଅସଫଳ
ଡାକବ କାନ ଧର

ନଶାର ଅନ୍ଧକାରେ
ନଗ୍ନ ହାହାକାରେ ।
ତୁମକୁ ଭୁଲେଁ ଯେବେ ଜୀବନ ସାଧନାରେ
ପରାଣ ଜଳଇ ଯେ ବିଷମ ବେଦନାରେ,
ସକଳ ହତଶିରୀ
ମରମ ପୋଡ଼େ ତରି

ଜୀବନ ସାଧନାରେ
ବିଷମ ବେଦନାରେ ।
ରଖ ଗୋ ରଖ ମୋତେ ବାନ୍ଧ କୋମଳ ଭୁଜେ
ନ ଜାଣେ ତୁମ ବିନୁ ଆନ ପ୍ରେୟସୀ ମୁଁ ଯେ,
ବସନ୍ତ ଫୁଲବନେ
ପାହାନ୍ତିଆ ପବନେ

ବାନ୍ଧ କୋମଳ ଭୁଜେ
ନ ଜାଣେ ଆନ ମୁଁ ଯେ ।
ଆଷାଢ଼ ସନ୍ଧ୍ୟା ପଥେ ଉଦାସ ପ୍ରାଣ ମମ
ତୁମର ଆଶେ ବଞ୍ଚେ ହେ ମୋର ପ୍ରିୟତମ !
ପତ୍ରର ଶୀତ ନଶି
ତୁମର ଅଙ୍ଗେ ମିଶି

## ମହାଜାପ

ଉଦାସ ପ୍ରାଣ ମମ
ହେ ମୋର ପ୍ରିୟତମ ।
ଚନ୍ଦନହିଁବୋଳ ଅଙ୍ଗେ ଆସ ହେ ବଇଶାଖେ
ଶରତ ପ୍ରଭାତରେ ନିରେଖି ମୋ ଗବାକ୍ଷେ
ଜପଇ ତବ ନାମ
ହୃଦୟେ ଅବିରାମ

ପ୍ରଦୋଷ ପ୍ରଭାତରେ
ଜପଇଁ ମୁଁ ଅନ୍ତରେ ।
ତିଆଗି ଯିବ ସବୁ ତୁମର ଲାଗି ସଖି
ତୁମର ପଦେ ମୋର ଜୀବନ ପୂଜା ରଖି
ଜାଣେ ଗୋ ଜାଣେ ସତ୍ୟ
ଆଦର ସଦା ବନ୍ଧ

ତୋଳିବ ଧୂଳିତଳୁଁ
ପରମ ପ୍ରୀତି ବଳୁଁ ।

---

## ବିଶ୍ୱର ଆହ୍ୱାନ

ସନ୍ଧ୍ୟା ସଗିଣୀ ରକତ ରାଗରେ
ବଢ଼ିଛି ଏ ମୋର ବାସନା.
(ତୁମେ) ଅଳତାର ରାଗ ଚରଣେ ଲେଖି ଗୋ
ଆସ ନା, ମୋ ପାଖେ ଆସ ନା ।

ମୁଁ ଯେ ବୁଝିଛି ଆକାଶ ବ୍ୟଥା
ଆଜ ଶୁଣିଛି ସିନ୍ଧୁ ବାରତା
ତୁମେ ଦିଗ୍‌ବଳୟର କଜଳ ରଞ୍ଜି ଗୋ
ନ ଆସ ସୁନୀଳବସନା
ଆଜ ବଢ଼ିଛି ପରା ମୋ ବାସନା ।

ତୁମେ କପାଳେ ନ ଦିଅ କଳା ଅଭର ଗୋ
ଅଧରେ ନ ଦିଅ ରକତ,
ଆଜ ପୁନଅଁ ସୁନ୍ଦର ଦୋଳ ଉତ୍ସବରେ
ମୁଁ ପରା ହୋଇଛି ଭକତ ।

ତୁମେ ଦଶନେ ନ ଦଅ ହାସ
କଳକଣ୍ଠେ ନାହିଁ ଭାଷ,
ଆଜ ତେଜି ଭବିଷ୍ୟର କୁହୁଡାନେ ମଜ
ମୁଁ ନ ମାନେ ପଥ ଅପଥ
ତୁମେ ଅଧରେ ନ ଦଅ ରକତ ।

ଆଜି ମୋତେ ଛାଡ଼ ମୁଁ ଯେ ଭୁବନେ ଆସିଛି;
ପିଇଛି ସ୍ୱପନ-ସୁଧା
ଘର ଛାଡ଼ ମୁଁ ଯେ ଘର କରିଅଛି
ମୁକତ ମହା ବସୁଧା ।

ପକ୍ଷୀଡାକେ ମୋତେ ବନେ
କେତେ ଡାକରା ଆସେ ପବନେ
କେତେ ନିମନ୍ତ୍ରଣ ଭୁବନୁ ଆସିଛି
ମେଣ୍ଟାଇବ ପ୍ରାଣ କ୍ଷୁଧା
ମୁଁ ତ ପିଇଛି ସ୍ୱପନ ସୁଧା ।

ସନ୍ଧ୍ୟା ରହିଛି ମୋହର ଆଶାରେ
ରଙ୍ଗାଇବ ତା'ଜଯୋଳ,
ପ୍ରଭାତ ଡାକଇ ବିରହ ଭାଷାରେ
ମୋହର ପ.ଣଁ ବିକଳ

କାନନେ ଡାକୁଛି ମହାଶୀ
ନଦୀ ହ୍ରଦେ ଡାକେ ଭଉଁରି,

## ମହାଶାପ

ଶିଖର ଚୂଳରେ ମେଘ ଡାକିଲାଣି,
ଭୁବନେ ଡାକିଲେ ସକଳ,
ମୋହର ପାଇଁ ସେ ବକଳ ।

ଧାନ ଖେତ ପରେ ବଉଦ ଭାସୁଛି
ସେ ଖୁଞ୍ଜିଛି ମୋହ ଆଶାରେ,
ନୀଳ ଆକାଶରେ ଚାତକ ମିଶଇ
ମୋହର ବିରହ ଦଶାରେ ।

ଚନ୍ଦ୍ରତଳେ କାନ୍ଦେ ଚକୋର,
ମୋହର ବିରହେ କାତର,
ବରଷା ଆଗମେ ଡାହୁକ ଡାକଇ
ମୋହର ବିରହ ଭାଷାରେ,
ଆଜି ସବୁବେ ମୋହର ଆଶାରେ !

ଚକିତ ହରିଣୀ-ନୟନ ଖୁଞ୍ଜିଛି
ମୋହର ମିଳନ ଆଶେ,
କୁସୁମ କଳିକା ମଉନେ ରହିଛି
ମୋହର ବିରହ ତ୍ରାସେ,

ଦୂର ବିଦେଶରେ କେତେ ପ୍ରଣୟିନୀ
ମୋହ ବିରହରେ ଜଗନ୍ତି ଦିନ
ମୋହ ବିରହରେ କେତେ ହତାଶ୍ୱାସ
ମିଶିଛି ଆଜ ଆକାଶେ ।

## ମହାପାପ

ଆଜ ଉଦଭଦଳଆ ଉଡ଼ବ ବୋଲ୍ ସେ
ମୋହ ପଥେ ଅଛି ଚାହିଁ
ପ୍ରସ୍ଫୁଟ କୁକ୍କୁଟ କଣ୍ଠ ସଜାଡ଼ୁଛି
ସେ ଚନ୍ଦ୍ର ମୋହର ପାଇଁ ।

ପ୍ରବୋଧିବ ଏନ୍ତି କପୋତ
ସାନ୍ତ୍ୱନା ହୋଇବ ପ୍ରାପତ,
ଝିଲ୍ଲୀ ଶରଭ କାତର କାନ୍ଦଣା
ମୋ ବିନା ତାହାଙ୍କେ ନାହିଁ
ସେ ତ ମୋ ପଥେ ରହିଛି ଚାହିଁ ।

କଳକଳପାଣ୍ଡ ସେ ସ୍ୱାମୀ ସଙ୍ଗେ ତାର
କଳହେ ରହିଛି ମଗନ
ମେଣ୍ଟାଇବ ତାହା, ତୃଷିତ ଚାତକ—
ହାହାକାରେ ପୂରେ ଗଗନ ।

ବିରହୀ ଚକୋର ଦମ୍ପତି
ତାଙ୍କୁ ଦେବି ମୁଁ ମିଳନ ସମ୍ମତି,
ଭ୍ରମର ଗୃହିଣୀ କାଢରେ ତାକୁ ମୁଁ
ବରଷିବ ଶୋଭ୍ର ସଦନ
ହାହାକାରେ ପୂରେ ଗଗନ

## ମହାଯାପ

ନୟନର ଜଳ ପୋଛ ଗୋ ନୟନୁଁ
ବଦନେ ପ୍ରକାଶ ହାସ ;
ଭୁବନ ଡାକୁଛି ପବନ ଡାକୁଛି
ଚଳବ ମୁଁ ପରବାସ ।

ମୋ ବିରହେ ସବୁ ତାରକା ଗହଳେଁ
ଆକାଶ ନଇଁଛି ଧରଣୀର ତଳେ
ମୋ ବିରହେ ସତେ ସାଗର ବକ୍ଷରେ
ଲଗିଛି ଶର ପରଶ
ଆଜ ଚଳବ ମୁଁ ପରବାସ ।

## ନିଜ ଭୁଲ୍

ସୁଦୂର ଗ୍ରାମ କାନନ ତଳ
ଜୋଛନା ତଳେ ଭିଜନ୍ତି ଲୀନ
ଚେତନାହୀନ ପବନ ଆଜି
ପ୍ରଦୋଷ ପଥେ କି ଉଦାସୀନ !

ନୀରବ ପ୍ରୀତି ଲୁଚାଇ ପ୍ରାଣେ
ନାଚନ୍ତି ବନେ କେତେ ସେ ବାଙ୍କେ,
ସଞ୍ଜ ଆଗମେ ନୀରବ ଧରା !
ପକ୍ଷୀଟି ନାହିଁ ଡାକଇ ଶାଖେ,

ସନ୍ଧ୍ୟାର ତାରା ଯାଇନି ଲିଭି
ଜୋନ୍ହନାବାଳା ଆକାଶେ ବସି
ନୀରବ ନମ୍ର ନୟନ [illegible]
ବଦନ ଟେକି ଦେଖଇ ହସି !

ପାକଲା ଧାନ [illegible] ଆଜି
ମୂର୍ଚ୍ଛି ବ୍ୟୋମ ମୂର୍ଚ୍ଛନ୍ତି ଧରା
ମୂକ ଧିଆନେ [illegible]
ଭୁବନ ଆଜି ନିଜ ପାସୋରା ।

ପାଶୋର ଦିଏ ନିଜକୁ ଟଣି
ନିଜକୁ ଭୁଲେ ଏ ବିଲ ଗ୍ରାମ
ନିଜକୁ ଭୁଲି ସଜଳ ନଦୀ
ଚଳେ ଅଙ୍ଗରେ ନାହିଁ ବିଶ୍ରାମ ।

ନିଜକୁ ଭୁଲି ଏ କାଣ୍ଟକେଣ୍ଟ
ମୁଦୁର ଗୀତେ ରହେ ମୁଁ ଶୁଣି,
ଲଫତ ଧରି ଲଫତ ବଣ,
ବିଜନ ଏଥି କେହି କି ନାହିଁ !

କେବଳ ଏଥି ନାଚଇ ଶୂନ୍ୟ
ପବଣ ତହିଁ ରହଇ ଲଖି,
ଯେତେ ମୁଁ ଶୁଣେ ଜୋଛନା ପଥେ
ଉପନ୍ତ ମୋର ନ ମାନେ ଆଖି ।

ଏ ଦେଶ କାହୁଁ ଚହ୍ନିଲ ତୁମେ
ସଦା ଯେ ତୁମେ ନିଜକୁ ଭୁଲ ?
କହ ଗୋ କାହୁଁ ଆସିଲ ଏଥି
ଚରଣ ତଳେ ଫୁଟାଇ ଫୁଲ ।

କପାଳେ ତବ ଶିଶିର ଚୁମେ
ନୟନେ ଲାଗେ ସ୍ୱପନରାଶି,
ନିଜନ ଏହି ମଉନ ଦେଶେ
କହ ଗୋ କାହୁଁ ଅଇଲ ଭାସି ।

ନୟନ ଜଳେ ତମସା କୋଳେ
ଯାଉଛି କେତେ ଶ୍ରାବଣ ରାତି
କେତେ ଫଗୁଣ ମଧୁର ଗନ୍ଧେ
ଜଳୁଛି ମୋର ଜଟିଳ ସ୍ମୃତି।

ତୁମରି ଲାଗି ବାଜୁଛି ବୀଣା
ସଞ୍ଜ ସକାଳ ଦିବସ ନିଶି
ଗୋଧୂଳି କେବେ ମିଳାଏ ଧୀରେ
ପାହାନ୍ତ ବାଆ ସହିତେ ମିଶି।

ଚକୋର ମୋର ଅନ୍ତର ବନ୍ଧୁ।
ତୁମରି ଲାଗି କାନ୍ଦୁଛି କେତେ
ହତାଶା ପରେ ହତାଶା ଦେଇ
ନୂତନ ଆଶା ବାନ୍ଧୁଛି କେତେ।

ନ ଆସ ତୁମ୍ଭେ ନ ଦିଅ ଦେଖା
ବ୍ୟଥିତ ମୁହଁ ଫେରାଇଁ ଯିବେ
ଅଭିମାନର ଲୋତକ ରାଶି
ନ ପଡ଼ୁ ତଳେ ନୟନେ ମରେ।

ନ ଭୁଲି ପଥ କେସନ ପୁଣି
ଅଜଣା ଦେଶେ ଆସିଲି ଚାଲି
ଶୀତ ବରଷା ନ ମାନି ତୁମେ
ଏ କି ମଜନ ବେଶରେ ଖାଲି।

ହେ ନଜଭୁଲା ! କେମନ କହ,
ନ ଭୁଲ ପଥ ବନ ଗାଇଲେ ?
ଅନ୍ଧାର ଏବ୍ବ କଣ୍ଟକ ପଥେ
ଜନ ପରାଣୀ ନାହିଁ କାହିଁ ଯେ !

ଆସିଲ ଯେବେ କ ପାଇଁ ଦୂରେ ?
ମୁଁ ପରା ଅଛୁ ନକଟେ ଅଛ
ଭ୍ରମର ପାଇ ରହୁଛି ଗୁହିଁ
ହରଦ-ବ୍ୟଥା ଟଳାଏ ମତ ।

କପାଇଁ ଆସ ଯାଅ କପାଇଁ
ନ କହ କପାଁ ପଦେ ତ କଥା
କ୍ଷଣକେ ରୁହିଁ ଯାଅ ଉଡ଼ିଇ
ଶିର ଦନକୁ ଲଗାଇ ବ୍ୟଥା ।

---

# କୃଷୀର ଭାଗ୍ୟ

ବରଷା ଆସିଲା, ଚଷା — କ ଭାବନା କରେ ବସି
ଚୂଲରେ ପଶଇ ପାଣି — ଅଧେ ଚୂଲ ପଡ଼େ ଖସି ।
ଘରଣୀ କଜଆ କରେ — ଆଜ ତାକୁ ପାଳ ଜର
ବରଷକ ପିଲଟା ତ — କାନ୍ଦୁ କଫେ ସଡ଼ ସଡ଼
ସବୁବେଳ ଛଟପଟ — ଦିନ ରାତ କାଉଁ କାଉଁ
ଦେଉଛି ସକାଳେ ପେଉ — ଥୋପେ ତାକୁ ଶନାଜାଉ
ଏ ବେଳାକୁ ନାହିଁ କିଛି, — ଶୁଖ'ଇ ଦେଲଣି ମୁହଁ
କଟି କଟି କଳା ମେଘ — ବିଲରେ ପଡ଼ୁଛି ସୁଅ ।
ଚଇତନ ଡାକିଥିଲା — ଆଜ ତାର ପାଳ ପୂଜା
କିଏ ଯିବ ପାଖ ଦେଖି — ଘରେ ନାହିଁ ଚୂଡ଼ାଭୁଜା !
ବିଲରେ ପଡ଼ୁଛି ସୁଅ — ତିନ ଦିନ ନାହିଁ ରୁଷ
ବାଉ ବରଷର ପୁଅ — ହେଗି ହେଗି ଧଇଁକାସ
ହେଉ ଯଉ କେତେ କଣ — ଯାଚଲା ତ ବଣ୍ଟ ଠାଇଁ .
ଡାକ ଡାକ ଥକଲା ତ — ନ ଶୁଣିଲେ କିଏ କାହିଁ
ଛୁଡ଼ାଇ ଯାଉଛି ବାହା — ଶିଖିଥିଲା ସବୁ କାମ
ସବୁ ମିଛ, ରଖେ କିଏ ? — ହୋଇଲେ କରମ ବାମ ।
କଣିଥିଲା ଛଡ଼ାଟିଏ — ପିଲାଏ ଖାଇବେ ଦୁଧ
ମହାଜନ ଦେଖି ତାହା — ଡାଗଦା କରୁଛି ସୁଧ !

ଜମିଦାର ପିଆଦାଙ୍କୁ      ଆଠଣା ଦେଉଛନ୍ତି କାଲି
ଏ ବରଷ ଖଜଣାଟା      ସତାଇବ ମାସେ ଖାଲି !
ମାସେ ହେଲେ ଭାଙ୍ଗି ଦେବ      ନାହିଁ ତାର ଭାବନା ତ
ଦେଖାଯିବ ଏଦ୍ଧନାରେ      ଟକେ ଗଲେ ଭାର ହାତ ।
ଧର୍ମ ସାଉ ଦୋକାନରୁ      ଦ'ଅଣା ହୋଇଛନ୍ତି ବାକି
ସେଥି ଲଗି ପ୍ରସୁଲଏ      ଦେବାପାଇଁ ମିଛ ସାକ୍ଷୀ
ମଣିଜେନା ମାମଲାରେ      ଠାକୁଖ ହୋଇଛନ୍ତି ତା'ର
କଟକ ଯିବାକୁ ହେବ      ଆସୁଛନ୍ତି ଯେ ଗୁରୁବାର !
କଏ ପର୍ବ କରୁଥିଲେ      ହଟପୁର ହାଟେ ସଭା
ସବୁ ଖାଲି ଭେଦା ଭେଟ      ଚୂଜା ଶ୍ରିପତ ଅବା
ନତ ଏଧ୍ୟ କଞ୍ଜରୁକ      ଦେଖାଇ ଠକେକ୍ର ଅର
ସେତ୍ୟମିତ ଜର କଫ      ସେହ୍ନ ତ କୁଣ୍ଡଆ ଘର
ସେନ୍ନ ତ ଖାଣ୍ଡା ସୁଧ      ଆଗ ପଣ ଚଢ଼ା ଦରେ
ନାହିଁ ଲଭ କଧ ତୋଲି      ଥିବ ଯାହା ବରଦରେ !
ଆପଣ: ବଦ୍ଧ ଆପେ      କରିବାକୁ ହେବ ଆଜ
ଗଲଣି ସେ ଦେଳ କାଳ      କହିବାକୁ ହାଁ ଜୀ ହାଁ ଜୀ !
ଭରିବାକୁ ହେବ ରଡ଼      ନାହିଁ ନାହିଁ ନାହିଁ ଯାହା
କବିମତ ଦେଖାଇବ      ଖାଲି ଘ ସକଟା ଦାଆ !

ସ ମା ପ୍ତ

Printed by P. Kar, at the U. S. Press, Cuttack.